# ସୂଚନା

ଗୃହଅଙ୍ଗେ ଚହଲ—ଖାଦ୍ୟ ଆମର ଅଭାବ । ଅଭାବ ଆମର ଦୈନ୍ହସନ୍ଧା କଥା । ଏବେ କାନୁ ସୀମା ଟପିଗଲାଣି । ଏ ଖାଦ୍ୟସଙ୍କଟରୁ ଉଦ୍ଧାର ପାଇବାଲାଗି ନାନା ଉଦ୍ୟମ କରାଯାଉଛି । ଏଥିରେ ସହଯୋଗ କରିବା ପ୍ରତ୍ୟେକ ଦେଶବାସୀଙ୍କର କର୍ତ୍ତବ୍ୟ । ତେଣୁ 'ଅବସ୍ଥାଟା କଣ' ବୁଝି ବିଚାରି ଦେଖିବା ଆବଶ୍ୟକ । ଏଢିକବେଳେ ବିଶେଷ କରି ଦେଖିବାର କଥା—ଏ ଶୀତ ଏକା ମାଘକେ ଯିବ ତ ? ନ ଯିବ ଯେବେ, ପୁଣି କି ଉପାୟ ? ସବୁ ଦିଗରୁ ଏ କଥା ଆଲୋଚନା କରିବା ଉଚିତ । କାବ୍ୟ ଉପନ୍ୟାସ ପରି ରସମୟ ନ ହେଲେ ମଧ୍ୟ ଏ ଆଲୋଚନା କରିବାକୁହିଁ ହେବ—ଗତ୍ୟନ୍ତର ନାହିଁ । ଏହି ଉଦ୍ଦେଶ୍ୟରେ ଏ ଲେଖାର ଉଦ୍ୟମ ।

କଟକ　　　　　　　　　　　　　　ଲେଖକ
ତା ୧-୭-୧୯୪୬

# ଏ ଚିନ୍ତା କାହିଁକି ?

ଖାଇବା କଅଣ ?—ଅଲ୍ପ ମୁଷ୍ଟିମେୟ ଭାଗ୍ୟବାନ୍ କେତେ ଜଣଙ୍କୁ ବାଦ୍‌ଦେଲେ ସବୁଠାରେ, ପୁଣି ବିଶେଷତଃ ଭାରତବର୍ଷରେ ସମସ୍ତଙ୍କୁ ଅହରହ ଏ ଚିନ୍ତା କରିବାକୁ ପଡ଼େ । ସାରା ଜୀବନ ମନ ପ୍ରାଣଦେଇ ଏଥିଲାଗି ସଂଗ୍ରାମ କରି ମଧ୍ୟ ଅନେକଙ୍କ ଜୀବନରେ ଏ ସମସ୍ୟାର ସମାଧାନ ହୋଇପାରେ ନାହିଁ । ଛନ୍ଦ ମନ୍ଦ, ହୀନ ଘୃଣ୍ୟ କେତେ ପ୍ରକାର ବେଶ ଯେ ଏଥିଲାଗି ସାଜିବାକୁ ହୁଏ, ତା'ର କଳନା ନାହିଁ । ଏ ପ୍ରଶ୍ନ ଅତି ଗୁରୁତର ପ୍ରଶ୍ନ ଏବଂ ଏ ସମସ୍ୟା ଜୀବନର ସବୁଠାରୁ ବଳ ବରିଷ୍ଠ ସମସ୍ୟା ।

ଏଠାରେ କିନ୍ତୁ ବ୍ୟକ୍ତିଗତ ଦୃଷ୍ଟିରୁ ଏ ପ୍ରଶ୍ନର ବିଚାର କରିବା ଉଦ୍ଦେଶ୍ୟ ନୁହେଁ । ସମୂହ ଦୃଷ୍ଟିରୁ ଆଲୋଚନା କଲେ, ଏ ପ୍ରଶ୍ନର ରୂପ-ରେଖ ହେବ ଭିନ୍ନ ଧରଣର । ପ୍ରକୃତି ତାର ଶ୍ରେଷ୍ଠ ସୃଷ୍ଟି ମାନବଲାଗି ଅପାରିତ ଭାବରେ ଅଜସ୍ର ବିଭବ ମେଲି ଦେଇଛି ଏବଂ ମାନବ ତା'ର ବୁଦ୍ଧି, ବଳ, ପରିଶ୍ରମ ସାହାଯ୍ୟରେ ସେ ଧନ ସମ୍ପଦର ପ୍ରସାର କରି ଚାଲିଛି । ଅବଶ୍ୟ ଏ ପ୍ରସାରର ମାତ୍ରା ସବୁଦେଶରେ ସବୁକାଳରେ ସମାନ ଭାବରେ ହୋଇ ପାରି ନାହିଁ । ସେଥିରେ ତାରତମ୍ୟ ବହୁତ । କେଉଁଠାରେ ଏକା ଜମିରୁ

ବର୍ଷ ଭିତରେ କେଉଁଠି ଗହମ ତିନଥର; କେଉଁଠାରେ ତିନି ବର୍ଷରେ ଥରେ ମାତ୍ର ଫସଲ ଅଦାୟ ହୋଇପାରେ ନାହିଁ । ଇଉରୋପ ଆମେରିକା ସଙ୍ଗେ ଆମ ଦେଶକୁ ତୁଳନା କରି ଦେଖିଲେ ଏ ବିରାଟ ତାରତମ୍ୟ ସ୍ପଷ୍ଟରେ ଦେଖାଯାଏ । ଯେଉଁ ଦେଶରେ ମାନବ ପ୍ରକୃତି ସଙ୍ଗେ ସଂଗ୍ରାମ ବା ସହଯୋଗ କରିବାରେ ଯେତେ ବୁଦ୍ଧି ଖର୍ଚ୍ଚ କରିଛି, ସେ ଦେଶରେ ସେ ସେତେ କୃତକାର୍ଯ୍ୟ ହୋଇଛି ।

ପୁଣି ଅନ୍ୟ ଦିଗରେ ଦେଖିବାକୁ ଗଲେ, ଏ ଯୁଗର ବହୁବିଭବଶାଳୀ ଦେଶରେ ପ୍ରଚୁର ଧନ ସମ୍ପଦର ଉତ୍ପାଦନ ହୋଇ ମଧ୍ୟ ଅନ୍ନାଭାବ, ବସ୍ତ୍ରାଭାବ, ଉତ୍କଟ ଦାରିଦ୍ର୍ୟ ମୁଣ୍ଡ ଟେକି ଠିଆ ହୋଇଛି । ଅଜସ୍ର ବେଲି ପାଚେ, ଝଡ଼େ, ନଷ୍ଟ ହୁଏ; ମାତ୍ର ସ୍ୱଳ୍ପବିତ୍ତ ବୁଭୁକ୍ଷିତ ତାକୁ ନୈରାଶ୍ୟରେ ଚାହିଁ ରହେ । ଆଧୁନିକ ସଭ୍ୟତାର ସବୁଠାରୁ ବଡ଼ ଅତି ନିନ୍ଦନୀୟ ଏ କଳଙ୍କ ।. ସାମାଜିକ ଅନୁଷ୍ଠାନ ଯେପରି, ଅର୍ଥନୈତିକ ପ୍ରଣାଳୀ ଯେଉଁ ଧରଣର, ସେଥିରେ ଯେତେ ବସ୍ତୁର ସମ୍ପଦ ଉତ୍ପାଦିତ ହେଲେ ମଧ୍ୟ ଆବଶ୍ୟକ ଅନୁଯାୟୀ ତା'ର ବଣ୍ଟନ ହୋଇପାରୁ ନାହିଁ । ଅପରିମିତ ବିଭବ ମଧ୍ୟରେ ନିରାଟ ଅନାଟନ ଲାଗି ରହିଛି ।

ଧନ ସମ୍ପଦର ବଣ୍ଟନପ୍ରଣାଳୀ ଆଲୋଚନା କରିବା ଏଠାରେ ଉଦ୍ଦେଶ୍ୟ ନୁହେଁ । ଦେଶ ବିଦେଶର ଅର୍ଥନୀତି ବିଶ୍ଳେଷଣ କରିବାଲାଗି ଏ ଅବତାରଣା କରାଯାଇ ନାହିଁ । ଏଠାରେ କେବଳ ବିଚାର କରିବାକୁ ହେବ, ଆମର ଏ ଭାରତବର୍ଷରେ ପ୍ରକୃତି କି ବିଭବ ଆମକୁ ଦାନ କରିଛି, ଏ ଦେଶ ଲୋକେ ସେ ସମ୍ପଦର ବୃଦ୍ଧିପାଇଁ କି ବୁଦ୍ଧିବଳ ପ୍ରୟୋଗ କରିଛନ୍ତି ! ବଣ୍ଟନ ନୀତିର ଦୋଷାଦୋଷ ବାଦ୍‌ଦେଇ ଦେଖିଲେ ଏ ଧନ ସମ୍ପଦ ଏ ଦେଶର ବିରାଟ ଜନତାପାଇଁ ଯଥେଷ୍ଟ ଖାଦ୍ୟ ଯୋଗାଇ ପାରିବ ତ ? ଏଠାରେ ଏହି ପ୍ରଶ୍ନର ଆଲୋଚନା କରିବା ଉଦ୍ଦେଶ୍ୟ । ଭାରତବର୍ଷର କଥା ବିଚାର କଲାବେଳେ ଦରିଦ୍ର ବୋଲି ସୁପରିଚିତ ଆମର ଏ ଓଡ଼ିଶାପ୍ରତି ବିଶେଷ ଭାବରେ ଦୃଷ୍ଟି ପକାଇବା ପ୍ରୟୋଜନ ।

ଏଠାରେ ପ୍ରଶ୍ନ ହୋଇପାରେ, ବ୍ୟକ୍ତିଗତ ହିସାବରେ ନ ଦେଖି ଯେବେ ସମୁହ ଭାବରେ ଆଲୋଚନା କରିବାର କଥା, ତେବେ ସାରା ଭାରତବର୍ଷ ପାଇଁ "ଖାଇବା କଅଣ" ଏପରି ପ୍ରଶ୍ନ ଉଠିବ କାହିଁକି ? କୃଷି ବିଭବମୟ୍ ଏ ଦେଶ କଣ ସମସ୍ତ ଦେଶବାସୀଙ୍କୁ ଖାଦ୍ୟ ଯୋଗାଇବାରେ ଅସମର୍ଥ ? ଭାରତଜନନୀ ତା'ର ସନ୍ତାନମାନଙ୍କ ଲାଗି କଣ ଯଥେଷ୍ଟ ଖାଦ୍ୟ ଉତ୍ପନ୍ନ କରେ ନାହିଁ ? ଯୁଗ ଯୁଗ ଧରି ଯାହାର ବିଭବ ସାରା ପୃଥିବୀକୁ ଚମତ୍କୃତ କରିଥିଲା, ସେଠାରେ ଆଜ ଏ ହତାଶାର ବାଣୀ କାହିଁକି ? ଏସବୁ ପୁରାଣ କଥା କହି ଲାଗିଲେ ଦୁଃଖ କ୍ଲେଶ ଆପେ ଆପେ ଅପସରି ଯିବ ନାହିଁ । ଅଭାବ ଅସୁବିଧା ଏ ଦେଶରେ ବରାବର ଲାଗି ରହିଛି—ଏ କଥା ନିତ ଆଖିରେ ଦେଖା । ଏ ପୁଣ୍ୟ ଭୂମିରେ ବହୁ ହତଭାଗ୍ୟ ଲୋକଙ୍କ ପ୍ରତିଦିନ ଦୁଇଥର ଖାଇବାର ଯୁଟେ ନାହିଁ । ମାତ୍ର ସେଥିରେ ସମାଜରେ ଚହଲ ପଡ଼େ ନାହିଁ—ଦୈନନ୍ଦିନ ଜୀବନ ପ୍ରଣାଳୀରେ କୌଣସି ବ୍ୟତିକ୍ରମ ଘଟେ ନାହିଁ । ମାତ୍ର ସେ ଅଭାବ ଅନାଟନ ଯେତେବେଳେ ଉତ୍କଟ ରୂପ ଧାରଣ କରି ଲକ୍ଷ ଲକ୍ଷ ନରନାରୀଙ୍କୁ ଆକ୍ରମଣ କରେ, ଚତୁର୍ଦ୍ଦିଗରେ ସୃଷ୍ଟି ହୁଏ ହାହାକାର, ସେତେବେଳେ ସ୍ୱତଃ ଏ ଚିନ୍ତା ଆସେ, ଏ ପ୍ରଶ୍ନ ଉଠେ । ୧୯୪୩ ମସିହାରେ ଏପରି ଏକ ଉତ୍କଟ ଦୁର୍ଭିକ୍ଷ ଏ ଦେଶକୁ ଆକ୍ରମଣ କରିଥିଲା । ବଙ୍ଗଦେଶ ହୋଇଥିଲା ଏ ତାଣ୍ଡବର କେନ୍ଦ୍ର । ପନ୍ଦର ଲକ୍ଷ ନରନାରୀ ଏକା ଏହି ପ୍ରଦେଶରେ ପ୍ରାଣ ହରାଇଲେ । ଭାରତବର୍ଷର ଅନ୍ୟାନ୍ୟ କେତେକ ସ୍ଥାନରେ ମଧ୍ୟ ଏ ବିଭୀଷିକା ନୃତ୍ୟ କରିଥିଲା । ମାଲାବାର ଉପକୂଳରେ ଅବସ୍ଥା ସାଙ୍ଘାତିକ ହୋଇଥିଲା । ଓଡ଼ିଶାର, ବିଶେଷତଃ ଗଞ୍ଜାମ ଓ ବାଲେଶ୍ୱର ଜିଲ୍ଲାର କରୁଣ ଚିତ୍ର ଏବେ ସୁଦ୍ଧା ଲୋକଙ୍କ ଆଖିରେ ନାଚୁଛି ।

ଏ ଘଟଣାର ମାତ୍ର ତିନିବର୍ଷ ପରେ ପୁଣି ଏକ ଭୀଷଣ ଖାଦ୍ୟସଙ୍କଟ । ଏଥର ପାଳି ଦକ୍ଷିଣ ଭାରତର । ମାନ୍ଦ୍ରାଜ ପ୍ରଦେଶରେ ବହୁସ୍ଥାନରେ ଫସଲ ଏକାବେଳେକେ ଶୂନ୍ୟ । କୃଷିଭଣ୍ଡାର ପଞ୍ଜାବ ପ୍ରଦେଶରେ ମଧ୍ୟ ଶସ୍ୟ-ହାନି । ଅବସ୍ଥା ଅତି ସାଙ୍ଘାତିକ । ଅତି ଦୁର୍ଭାଗ୍ୟର କଥା ଏଥର 'ଖାଦ୍ୟ

ଖାଇବା ଆମେ କ'ଣ ?

ସଦ୍ୟ ଖାଲି ଭାରତବର୍ଷରେ ନୁହେଁ— ସାରା ପୃଥିବୀରେ । ଦୁର୍ଭିକ୍ଷ ବିଷୟରେ ଦେଶ ବିଦେଶ ବୁଲି ପ୍ରେସିଡେଣ୍ଟ ଟ୍ରୁମାନଙ୍କୁ ରିପୋର୍ଟ ଦେଲେ—ଏସିଆ ଇଉରୋପରେ ଖାଦ୍ୟର ଲକ୍ଷଣ ଅନାଟନ । ଅଶୀକୋଟି ଲୋକ ଅର୍ଥାତ୍ ସାରା ପୃଥିବୀରୁ ଏକ ତୃତୀୟାଂଶରୁ ଅଧିକ ଲୋକ ଅନଶନର କବଳରେ । ସରକାର ବେସରକାର ସବୁ ମହଲରେ ଚହଳ ।

ଦୁର୍ଭିକ୍ଷ ଭାରତବର୍ଷରେ ନୂଆ ନୁହେଁ । ଥରକୁଥର ଭିନ୍ନ ଭିନ୍ନ ସ୍ଥାନରେ ଏ ବିକଟ ଲୀଳାର ସୃଷ୍ଟି ହୁଏ । ସେତିକିବେଳେ ପ୍ରଶ୍ନ ଉଠେ— ଏ ଅନାଟନ କାହିଁକି ? ସେତିକିବେଳେ ଚହଳ ପଡ଼େ, ଘଣ୍ଟାଚକଟା ଲାଗେ । ମାତ୍ର ଏ ସମସ୍ୟା ସାମୟିକ ସମସ୍ୟା ନୁହେଁ । ଦୁର୍ଭିକ୍ଷ ବୋଲି ସରକାରୀ ଭାବରେ ଘୋଷଣା କରା ନ ଗଲେ ମଧ୍ୟ, ସବୁବେଳେ ଏ ଦେଶରେ ବହୁଲୋକ ବରାବର ଦରପୋଡ଼ା ରହନ୍ତି । ମ୍ୟାଲେରିଆ ମହାମାରୀ ପରି ଅନଶନ ଜାତିଗତ ଅଭ୍ୟାସରେ ପରିଣତ ହୋଇଗଲାଣି । କ୍ରମେ କ୍ରମେ ଏ ସମସ୍ୟା ଅତି ଜଟିଳ ହୋଇ ଉଠୁଛି । ଏ ଜାତିକୁ ବଞ୍ଚାଇ ରଖିବାକୁ ହେଲେ ଖାଲି ଏଇ ସାମୟିକ ଜରୁରୀ ଦୁର୍ଭିକ୍ଷ ନୁହେଁ, ଦୈନନ୍ଦିନ ଯେ ଅନାଟନ ବରାବର ଲାଗି ରହିଛି, ତା'ର ସ୍ଥାୟୀ ପ୍ରତିକାର କରିବାକୁ ହେବ । ପ୍ରତିକାର ପାଇଁ ଉପାୟ ଖୋଜିବା ପୂର୍ବରୁ ଏହାର କାରଣ ଖୋଜି ବାହାର କରିବାକୁ ହେବ । ତେଣୁ ପ୍ରତ୍ୟେକ ଦେଶବାସୀଙ୍କର ଆଲୋଚନା କରି ବୁଝିବା ଆବଶ୍ୟକ—ଆମର ଏ ଅବିରତ ଅନାଟନ କାହିଁକି ? ଏ ପ୍ରଶ୍ନର ଆଲୋଚନା ଆଉ ବେଶିଦିନ ସ୍ଥଗିତ ରଖାଯାଇ ନ ପାରେ । ସେଥିଲାଗି ଆଜି ଏ ଜରୁରୀ ପ୍ରଶ୍ନ—ଖାଇବା ଆମେ କ'ଣ ?

---

# କ'ଣ ଖାଇବା ଆବଶ୍ୟକ ?

ଦଶ ପାଞ୍ଚଟା ଜିନିଷ ଭିତରୁ ଗୋଟାଏ ବା ଦୁଇଟା ବାଛି ଖାଇବା ପାଇଁ ଯାହାର ସୁବିଧା ଓ ସୁଯୋଗ ଅଛି, ତା' ପାଇଁ ଏପରି ପ୍ରଶ୍ନ ସମୀଚୀନ ହୋଇପାରେ । ମାତ୍ର ସାଧାରଣ ଅଧିକାଂଶଙ୍କ ଲାଗି ଏପରି ପ୍ରଶ୍ନ ଗୋଟାଏ ପରିହାସ । ସେମାନଙ୍କୁ ଯାହା ମିଳେ, ସେଥିରେ ସବୁବେଳେ ଉଦରପୂରଣ ମଧ୍ୟ ସମ୍ଭବ ହୁଏ ନାହିଁ, ଆଉ ବାଛିବାର ବା ବିଚାର କରିବାର ଅବକାଶ ଆସିବ କାହୁଁ ? "କଣ ଖାଇବା ଆବଶ୍ୟକ" ଏ ପ୍ରଶ୍ନ ସେମାନଙ୍କପାଇଁ ଏକାବେଳେକେ ନିରର୍ଥକ । ତଥାପି ନିତାନ୍ତ ଦୀନଦରିଦ୍ରଙ୍କୁ ବାଦ୍‌ଦେଲେ ଅନ୍ୟମାନଙ୍କପାଇଁ ଏ ବିଚାର ସମ୍ପୂର୍ଣ୍ଣ ଉପହାସ ବୋଲି ଉଡ଼ାଇ ଦିଆଯାଇ ନ ପାରେ । ଖାଇବାପାଇଁ ସାଧାରଣ ଲୋକଙ୍କୁ ଯାହା କିଛି ମିଳେ ବା ମିଳିବା ସମ୍ଭବ, ତା'ର ମଧ୍ୟରେ କେଉଁ ଜିନିଷ କିପରି ଭାବରେ କି ପରିମାଣରେ ଖାଇବା ଆବଶ୍ୟକ ଏ କଥା ବିଚାର କରି ଦେଖିବା ଉଚିତ । ମାତ୍ର ଆମ୍ଭେମାନେ ସେ ସମ୍ବନ୍ଧରେ ସାଧାରଣତଃ କୌଣସି ଚିନ୍ତା କରୁ ନାହୁଁ । ବସିବା, ଶୋଇବା, ଗଳ୍ପ କରିବା ପରି ପ୍ରତିଦିନର ଖାଦ୍ୟପେୟ ମୋଟାମୋଟି ଅଭ୍ୟାସ ଉପରେ ନିର୍ଭର କରେ । ଭିନ୍ନ ଭିନ୍ନ ଖାଦ୍ୟଦ୍ରବ୍ୟର ଉପାଦେୟତା ବିଚାର କରି ସରକାରୀ ସହାୟତାରେ କେତେ ରାଜ୍ୟରେ ଜାତୀୟ ଖାଦ୍ୟ ଏକାବେଳେକେ ପରିବର୍ତ୍ତନ କରି ଦିଆଯାଇଛି, ମାତ୍ର ଆମର ଖାଇବା ପିଇବା ସେହି ଗତାନୁଗତିକ ଢଙ୍ଗରେ ଧରା ବନ୍ଧା ।

"କିପରି ଖାଦ୍ୟ ଆବଶ୍ୟକ"—ଏ କଥାର ବିଚାରପାଇଁ ପ୍ରଥମରୁ ପ୍ରଶ୍ନ ହେବ—ଆମ୍ଭେମାନେ ଖାଉ କାହିଁକି ? ଅଳ୍ପ କେତେକ ଯୋଗୀ ଋଷିଙ୍କୁ ବାଦ୍ ଦେଲେ ଖାଇବାହିଁ ଜୀବନର ପରମ ଆନନ୍ଦ—ଅଶେଷ ଉପଭୋଗ । ବ୍ୟକ୍ତିଗତ ଜୀବନରେ ଏବଂ ସାମାଜିକ ଆନନ୍ଦ ଉତ୍ସବରେ ସେଥିଲାଗି ସୁଭୋଜନର ବ୍ୟବସ୍ଥା । ମାତ୍ର ବଞ୍ଚି ରହିବାପାଇଁ, ଶରୀର ପୁଷ୍ଟି ଲାଗି, ଶରୀରକୁ କାର୍ଯ୍ୟକ୍ଷମ କରିବା ଲାଗି ଯେ ଖାଦ୍ୟର ପ୍ରୟୋଜନ, ଏଥିରେ ସନ୍ଦେହ ନାହିଁ । ସେଥିପାଇଁ କେହି ବହୁକାଳ ଅନଶନ କରି ସୁଦ୍ଧା ଜୀବନ ରକ୍ଷାକରି ପାରିଲେ ବିସ୍ମୟ ଲାଗେ; ମହାତ୍ମା ଗାନ୍ଧିଙ୍କର ଦୀର୍ଘ ଉପବାସରେ ଚାଞ୍ଚଲ୍ୟ ଉପସ୍ଥିତ ହୁଏ । ପ୍ରାଣୀ ମାତ୍ରକେ ଖାଦ୍ୟ ସମସ୍ତଙ୍କର ଏକାନ୍ତ ଆବଶ୍ୟକ ।

ଶରୀରକୁ ସୁସ୍ଥ, ସବଳ ଓ କାର୍ଯ୍ୟକ୍ଷମ କରିବାପାଇଁ କି ପ୍ରକାର ଖାଦ୍ୟ କେତେ ପରିମାଣରେ ଆବଶ୍ୟକ, ବିଶେଷଜ୍ଞମାନେ ସେ କଥା ନିରୂପଣ କରିବାପାଇଁ ଉଦ୍ୟମ କରିଛନ୍ତି । ଅବଶ୍ୟ ସମସ୍ତଙ୍କପାଇଁ ସମାନ ଧରଣର ବା ସମାନ ପରିମାଣର ଖାଦ୍ୟ ଆବଶ୍ୟକ ନୁହେଁ । ଜଳବାୟୁ ଭେଦରେ ଖାଦ୍ୟର ତାରତମ୍ୟ ହୁଏ । ଶୀତପ୍ରଧାନ ଦେଶରେ ଅଧିକ ଖାଦ୍ୟ ଆବଶ୍ୟକ—ଏପରି କି ଯେ କୌଣସି ସ୍ଥାନରେ ଗ୍ରୀଷ୍ମକାଳ ଅପେକ୍ଷା ଶୀତ ଦିନରେ ଅଧିକ ଖାଦ୍ୟ ଲୋଡ଼ା । ବୟସ ଓ ଅବସ୍ଥା ଭେଦରେ ମଧ୍ୟ ଖାଦ୍ୟରେ ପାର୍ଥକ୍ୟ ହେବା ସ୍ୱାଭାବିକ । ପୁଣି ବ୍ୟବସାୟ ଓ ପରିଶ୍ରମ ଅନୁଯାୟୀ ଭିନ୍ନ ଧରଣର ଓ ଭିନ୍ନ ପରିମାଣର ଖାଦ୍ୟ ପ୍ରୟୋଜନ । ଯେଉଁ ଲୋକ କଠିନ ପରିଶ୍ରମ କରେ, ତା'ର ଯେତେ ଖାଦ୍ୟ ଲୋଡ଼ା, ଆଲସ୍ୟମୟ ଜୀବନ ଯାପନ ଲାଗି ତା'ଠାରୁ ଅଳ୍ପ ଖାଦ୍ୟ ଆବଶ୍ୟକ ହେବାର କଥା । ଶାରୀରିକ ପରିଶ୍ରମପାଇଁ ଯେଉଁ ଧରଣର ଖାଦ୍ୟ ଆବଶ୍ୟକ, ମାନସିକ ପରିଶ୍ରମପାଇଁ ସେ ଧରଣର ହେବ ନାହିଁ । ଏ ସମସ୍ତର ସୂକ୍ଷ୍ମ ବିଚାର କରିବା ଏଠାରେ ସମ୍ଭବ ନୁହେଁ । ଭାରତବର୍ଷରେ ମୋଟାମୋଟି ସାଧାରଣ ଲୋକଙ୍କର ହାରିହାରି ହିସାବରେ କି ଧରଣର ଖାଦ୍ୟ ଆବଶ୍ୟକ, ତାହାହିଁ ଜାଣି ରଖିବା ଆବଶ୍ୟକ ।

ପୃଥିବୀର ଖାଦ୍ୟ ବିଷୟରେ ବିଚାର କରିବାପାଇଁ କୁନୁରଠାରେ ଗୋଟିଏ ଗବେଷଣା କେନ୍ଦ୍ର ସ୍ଥାପିତ ହୋଇଅଛି । ସେ କେନ୍ଦ୍ରର ବିଶେଷଜ୍ଞମାନଙ୍କ ମତରେ ଭାରତବର୍ଷରେ ଜଣେ ସାଧାରଣ ବୟସର ଲୋକପାଇଁ ନିମ୍ନଲିଖିତ ଖାଦ୍ୟ ଆବଶ୍ୟକ :—

| | |
|---|---|
| ଚାଉଳ | ୫ ଛଟାକି |
| ଗହମ ଜାତୀୟ ଖାଦ୍ୟ | ୨୩ ,, |
| ଡାଲି | ୧୩ ,, |
| ଦୁଧ | ୪ ,, |
| ଶାଗ | ୨ ,, |
| ପରିବା | ୩ ,, |
| ଫଳ | ୧ ,, |
| ତେଲ | ୧ ,, |
| ମାଛ ମାଂସ | ୧୩ ,, ( ଦୁଧ ପରିବର୍ତ୍ତିରେ ) |

ଏ ବିଷୟରେ ସବୁ ବିଶେଷଜ୍ଞ ଏକମତ ନୁହନ୍ତି । ଅନେକ ମନେ କରନ୍ତି, ଉପରେ ଯେଉଁ ହିସାବ ଦିଆଯାଇଛି, ତାହା ଯଥେଷ୍ଟ ନୁହେଁ । ଖାଦ୍ୟର ଏହି ତାଲିକା ଦେଖିଲେ ଜଣେ ପଞ୍ଜାବୀ ଲୋକର ହସିକି ଶୁଖିଯିବ । ମାତ୍ର ଦକ୍ଷିଣ ଭାରତରେ ବହୁ ଲୋକ ଯାହା ଖାଆନ୍ତି, ସେତିକି ଚଡ଼ିଆ ମୁଖାପାଇଁ ମଧ୍ୟ ଯଥେଷ୍ଟ ନୁହେଁ । ତଥାପି ହାରାହାରି ହିସାବରେ କୁହାଯାଇପାରେ ଯେ, ସାଧାରଣ ଦୈନିକ ଖାଦ୍ୟ ମଧ୍ୟରେ ଉପରିଲିଖିତ ସମସ୍ତ ପଦାର୍ଥ ଉପଯୁକ୍ତ ଭାବରେ ନ ରହିଲେ ଶରୀର ସୁସ୍ଥ, ସବଳ ଓ କାର୍ଯ୍ୟକ୍ଷମ ହୋଇ ପାରିବ ନାହିଁ । ଅଳ୍ପ ଲୋକଙ୍କୁ ଏ ଦେଶରେ ପ୍ରତିଦିନ ଏସବୁ ଖାଇବାକୁ ମିଳେ । ସାଧାରଣ ଲୋକଙ୍କର ଯାହା ଆୟ, ସେଥିରେ ଏତିକି ମିଳିବା ସମ୍ଭବ ନୁହେଁ । ଦୁଃଖର କଥା, ଯାହାପାଇଁ ମିଳିବାର ସୁବିଧା ଅଛି, କିପରି ଭାବରେ କି ପରିମାଣରେ ଖାଦ୍ୟ ଖାଇବା ଆବଶ୍ୟକ, ସେମାନେ ମଧ୍ୟ ତାହାର ବିଚାର କରନ୍ତି ନାହିଁ । ସେ ଯାହାହେଉ

ଆମ ଦେଶରେ ଯେଉଁ ଖାଦ୍ୟ ଉତ୍ପନ୍ନ ହୁଏ ବା କରାଯିବ, ସେଥିରେ ସମସ୍ତଙ୍କ ଲାଗି ଅନ୍ତତଃ ଏଇ ପରିମାଣରେ ଖାଦ୍ୟ ମିଳିବାର ବ୍ୟବସ୍ଥା କରିବାକୁ ହେବ । ତା' ନ ହେଲେ ପେଟ ଶୁଖାଇ ଏ ଜାତି କେତେକାଳ ମୁଣ୍ଡ ଟେକି ଠିଆହୋଇ ପାରିବ ? ଖାଦ୍ୟାଭାବରୁ ରୋଗ, ଶୋକ, ଅକାଳମୃତ୍ୟୁ ଅବିରତ ଲାଗି ରହିବ । ଦେଶ ବିଦେଶର ଲୋକଙ୍କ ସଙ୍ଗେ ସମକକ୍ଷ ହୋଇ ଠିଆହେବା କେବେ ହେଲେ ସମ୍ଭବ ହୋଇ ପାରିବ ନାହିଁ । ପେଟ-ସେକ ପେଟରେ ମାରି ସାହସରେ ପାଟିରୁ କଥା ପଦେ ବାହାରିବ ନାହିଁ — ସଂଗ୍ରାମ ତ ଦୂରର କଥା ।

---

# ଆମେ କଣ ଖାଉ ?

ଭାରତବର୍ଷରେ ଅଧିକାଂଶ ଲୋକଙ୍କର ଖାଦ୍ୟ ଭାତ । ଯୁକ୍ତପ୍ରଦେଶ ଅନେକ ଲୋକେ ଭାତ ଏବଂ ରୋଟି ମିଶାଇ ଖା'ନ୍ତି । ପଞ୍ଜାବ ଏବଂ ସୀମାନ୍ତ ପ୍ରଦେଶରେ ପ୍ରଧାନ ଖାଦ୍ୟ ରୋଟି । ସାଧାରଣ ଶ୍ରମିକ ଦିନରେ ଦୁଇଥର କୌଣସିମତେ ପେଟ ପୁରାଇ ପାରିଲେ ନିଜକୁ ଭାଗ୍ୟବାନ୍ ମନେକରେ । ଭାତ ମୁଠାଏ ହେଲେ ସେ ପରମ ସନ୍ତୁଷ୍ଟ । ଅନ୍ୟାନ୍ୟ ସୁସ୍ୱାଦୁ ବା ପୁଷ୍ଟିକର ଖାଦ୍ୟ ତା' ପକ୍ଷରେ ଜୁଟିବା କଷ୍ଟକର । ଅନୁସନ୍ଧାନ କରି ଦେଖାଯାଇଛି, ବଙ୍ଗଳା ଓ ମଧ୍ୟପ୍ରଦେଶରେ ପ୍ରାପ୍ତବୟସ୍କ ଲୋକେ ହାରାହାରି ଦୈନିକ ତେର ଛଟାଙ୍କି ଚାଉଳର ଭାତ ଖା'ନ୍ତି । ଦୁଧ ଘିଅ ତ ଦୂରର କଥା—ଡାଲି ଯାହା ମିଳେ ସେ ଅତି ଅଳ୍ପ । ଏଣୁ ତେଣୁ ଶାଗ ପରିବା କିଛି କିଛି ମିଳେ । ଓଡ଼ିଶାରେ କେତେକ ଗାଁ ଗହଳରେ ଅନୁସନ୍ଧାନ କରି ଦେଖା-ଯାଇଛି, ଜଣେ ସାଧାରଣ ଲୋକକୁ ଦୈନିକ ଖାଇବାକୁ ମିଳେ ମାତ୍ର—

| | |
|---|---|
| ଚାଉଳ | ୮ ୧/୨ ଛଟାଙ୍କି |
| ଡାଲି | ୧/୨ ,, |
| ଶାଗ | ୧/୨ ,, |
| ପରିବା | ୩ ,, |

ମାଛ ମାଂସ କ୍ୱଚିତ୍ କେବେ କେବେ ମିଳେ । ଅବଶ୍ୟ ଏତକ ସ୍ୱଳ୍ପପରିବାରରେ ସମସ୍ତଙ୍କ ଭାଗ୍ୟରେ ସବୁବେଳେ ଯୁଟେ ନାହିଁ । ତେବେ ଏ ଦରିଦ୍ର ଦେଶରେ ସାଧାରଣ ଅଧିକାଂଶ ଲୋକେ ଖାଲି ଭାତ ମୁଠାକରେ କୌଣସିମତେ ଉଦରପୂର୍ତ୍ତି କରନ୍ତି । ଜଳବାୟୁ ଯୋଗୁଁ ପଖାଳ ଭାତର ଆବଶ୍ୟକତା ଥାଇପାରେ । ମାତ୍ର ଖାଲି ଭାତରେ ପେଟ ପୂରିବା ସମ୍ଭବ ନ ହେଲେହିଁ, ଭାତ ତୋରାଣିର ବିଧାନ । ସହରମାନଙ୍କର ଅବଶ୍ୟ ଅବସ୍ଥା ଅନ୍ୟ ପ୍ରକାର । ଗାଁ ଗହଳରେ ମଧ୍ୟ କେତେକ ଅଛନ୍ତି ଭାଗ୍ୟବାନ୍ । ମାତ୍ର ସାଧାରଣଙ୍କ ଭାଗ୍ୟରେ ଭାତ ମୁଠାଏ ଛଡ଼ା ଆଉ କିଛି ମିଳିବା ସମ୍ଭବ ହୋଇପାରୁ ନାହିଁ । ପୁଣି ସେ ଭାତ ମୁଠାକ ମଧ୍ୟ ଯଥେଷ୍ଟ ନୁହେଁ ।

ଏପରି ଅବସ୍ଥାରେ ଖାଲି କୁଇନାଇନ ଖାଇ ମେଲେରିଆରୁ ମୁକ୍ତି ମିଳିବା ଅସମ୍ଭବ, ପ୍ରତିଷେଧକ ଇଞ୍ଜେକସନ୍ ଦ୍ୱାରା ଡାଇଜା ପ୍ରଭୃତି ମହାମାରୀରୁ ପରିତ୍ରାଣ ମିଳିବା ଦୁରୂହ । ରୋଗର ଆକ୍ରମଣରୁ ରକ୍ଷା ପାଇବାପାଇଁ ପ୍ରଥମତଃ ଶରୀରର ସଂଗ୍ରାମ କରିବାଲାଗି ଉପଯୁକ୍ତ ଶକ୍ତି ଥିବା ପ୍ରୟୋଜନ ଏବଂ ସେ କେବଳ ଉପଯୁକ୍ତ ଖାଦ୍ୟରେହିଁ ସମ୍ଭବ । ତା'ର ଯଥାର୍ଥ ବ୍ୟବସ୍ଥା କରି ନ ପାରିଲେ କୌଣସି ସମସ୍ୟାର ସମାଧାନ ହୋଇ ପାରିବ ନାହିଁ ।

ଏଠାରେ ଆଉ ଗୋଟିଏ ବିଷୟପ୍ରତି ଦୃଷ୍ଟି ପଡ଼ିବା ଉଚିତ । ଦରିଦ୍ର ଏ ଦେଶ; ଯଥେଷ୍ଟ ଖାଦ୍ୟ ଲୋକଙ୍କୁ ମିଳୁ ନାହିଁ; ଅଥଚ ସାଧାରଣ ଭୋଜି ବା ଉତ୍ସବରେ ଯେ ପରିମାଣରେ ଖାଦ୍ୟ ଦ୍ରବ୍ୟ ନଷ୍ଟ ହୁଏ, ତା' ଦେଖିଲେ ଏ ଦେଶ ଏପରି ଦୁଃସ୍ଥ ଦରିଦ୍ର—ଏ କଥା କେହି ବିଶ୍ୱାସ ମଧ୍ୟ କରି ପାରିବେ ନାହିଁ । ଏ କଳଙ୍କ ଆମର ପରମ୍ପରାଗତ ହୋଇଗଲାଣି । ଆଶ୍ଚର୍ଯ୍ୟର କଥା ଯେ, ଲୋକ ଏପରି ଉତ୍ସବରେ ଯେତେ ବେଶି ନଷ୍ଟକରି ପାରେ, ତା'ର ସମାଜରେ ଗୌରବ ଏବଂ ପ୍ରତିପତ୍ତି ସେତେ ଅଧିକ । ଯେଉଁ ଦେଶରେ ଲୋକଙ୍କ ଲାଗି ପ୍ରଚୁର ଖାଦ୍ୟ ପଦାର୍ଥ ଅଛି, ସେଠାରେ ମଧ୍ୟ ଏପରି ଭାବରେ ନଷ୍ଟ କରିବା ଅତି ଅସଙ୍ଗତ, ଆଉ ଏ ଦରିଦ୍ର

ଦେଶରେ ଏହାକୁ ମହାପାପ ବୋଲି ବୁଝିବା ଉଚିତ । ଲୋକଙ୍କର ମନୋବୃତ୍ତିରେ ଏବଂ ସାମାଜିକ ଅନୁଷ୍ଠାନରେ ଏଥିଲାଗି ପରିବର୍ତ୍ତନ ଅବଶ୍ୟକ, ଏଥିରେ ସନ୍ଦେହ ନାହିଁ । ତଥାପି ଏ କଥା ମଧ୍ୟ ଜାଣିବା ଯେ ସାଧାରଣ ମାନବ ଜୀବନରେ ଭୋଜନ ଗୋଟାଏ ଉପଭୋଗ । ଖାଲି ଶରୀରକୁ ସୁସ୍ଥ ଓ କାର୍ଯ୍ୟକ୍ଷମ କରିବାଲାଗି ଯେତିକି ଖାଦ୍ୟ ଆବଶ୍ୟକ, ତା' ବ୍ୟତୀତ ଆନନ୍ଦ ଉପଭୋଗପାଇଁ ମଧ୍ୟ ଖାଦ୍ୟର ବ୍ୟବସ୍ଥା ରଖିବାକୁ ହେବ । ମାତ୍ର ସେଥିଲାଗି ମୂଲ୍ୟବାନ୍ ଖାଦ୍ୟ ସାମଗ୍ରୀ ଖାଲି ନଷ୍ଟ କରିବାରେ ଗୌରବ ବୋଧ କରିବା କଦାପି ବିଧେୟ ହୋଇ ନ ପାରେ ।

ଏଠାରେ ଏ ପ୍ରସଙ୍ଗର ଅବତାରଣା କରିବାର ଉଦ୍ଦେଶ୍ୟ ଅଛି । ଖାଲି ଯେତିକି ଖାଦ୍ୟ ହେଲେ ଲୋକ ସୁସ୍ଥ ଏବଂ କାର୍ଯ୍ୟକ୍ଷମ ହୋଇ ପାରିବ ବୋଲି ବିଶେଷଜ୍ଞମାନଙ୍କର ମତ, ଦେଶର ସମସ୍ତଙ୍କଲାଗି କେବଳ ସେତିକି ଖାଦ୍ୟର ବ୍ୟବସ୍ଥା କରାଯାଇ ପାରିଲେ ଯଥେଷ୍ଟ ହେବ ନାହିଁ । ଖାଦ୍ୟପେୟରେ ଉପଭୋଗ ବିଷୟଟା ଏକାବେଳକେ ବାଦ୍ ଦେଲେ ଚଳିବ କିପରି ? ଯେ କୌଣସି ଖାଦ୍ୟ-ଯୋଜନାରେ ବ୍ୟକ୍ତିଗତ ଏବଂ ସାମାଜିକ ଉପଭୋଗ ଧରି ଆବଶ୍ୟକ ଖାଦ୍ୟର ବ୍ୟବସ୍ଥା କରିବା ବିଧେୟ । କେତେ ପରିମାଣରେ ଖାଦ୍ୟ ଆମର ଲୋଡ଼ା, ସେ ବିଷୟରେ ହିସାବକିତାବ କଲାବେଳେ ଏଥିପ୍ରତି ଦୃଷ୍ଟି ଦେବାକୁ ହେବ । ପୁଣି ଯେତେ ସଂଯତ ଓ ସାବଧାନ ହେଲେ ମଧ୍ୟ କେତେକ ପରିମାଣରେ ଖାଦ୍ୟ ନଷ୍ଟ ହେବା ଅନିବାର୍ଯ୍ୟ । ସେ କଥା ଏକାବେଳକେ ଭୁଲିଗଲେ ଚଳିବ ନାହିଁ ।

---

# ଖାଇବାକୁ ଲୋକ କେତେ ?

ଯେଉଁ ରାଜ୍ୟରେ ସବୁବେଳେ ସୁଖ ଶାନ୍ତି ଥାଏ, ଖାଇବା ପାଇ ପ୍ରଚୁର ମିଳେ, ଲୋକେ ଆନନ୍ଦରେ ନିର୍ବିଘ୍ନରେ ଥାନ୍ତି, ସେ ରାଜ୍ୟରେ ଲୋକସଂଖ୍ୟା ବରାବର ବଢ଼ି ଚାଲିଥାଏ । ଯେଉଁ ଦେଶରେ ଖାଇବାର ଅଭାବ, ଅଶାନ୍ତି, କଳହ, ସଂଗ୍ରାମ ଏବଂ ଦୁର୍ଭିକ୍ଷ ମହାମାରି ବରାବର ଲାଗି ରହିଥାଏ, ସେଠାରେ ଲୋକସଂଖ୍ୟା ହ୍ରାସ ଲଭିବାର କଥା । ଏଥିରୁ ପୁଣି କେହି କେହି ଅନୁମାନ ବା ପ୍ରମାଣ କରନ୍ତି ଯେ ଲୋକସଂଖ୍ୟା ବୃଦ୍ଧି ଦେଶରେ ଶାନ୍ତି ଶୃଙ୍ଖଳା ଏବଂ ସମୃଦ୍ଧିର ପରିଚାୟକ । ଏ ସବୁ ଅଛି ପୁରୁଣା କାଳିଆ କଥା । ଅଛି ପୂର୍ବକାଳରେ ଯେତେବେଳେ ଏ ବିରାଟ ପୃଥିବୀରେ ଜନପ୍ରାଣୀ ଥିଲେ ଅତି ଅଳ୍ପ, ସେତିକିବେଳେ ଏକଥା ସମ୍ଭବ ହୋଇଥିଲା । ଆଜିକାଲି ଜଗତର ଅବସ୍ଥା ଅନ୍ୟପ୍ରକାର । ଆଧୁନିକ ସଭ୍ୟତା ଯେଉଁ ଦେଶରେ ଯେତେ ପ୍ରସାର ଲାଭ କରିଛି, ଲୋକସଂଖ୍ୟା ସେ ଦେଶରେ ସେତେ ପରିମାଣରେ ନିୟନ୍ତ୍ରିତ ହୋଇଛି । ପଶ୍ଚିମ ଇଉରୋପରେ ବର୍ଷ ବର୍ଷ ଧରି ଲୋକସଂଖ୍ୟା ଆଦୌ ବଢ଼ି ନାହିଁ । ମାତ୍ର ଯେଉଁ ଦେଶରେ ଲୋକଙ୍କର ଜୀବନଯାପନ ପ୍ରଣାଳୀ ଅତି ନିକୃଷ୍ଟ ଧରଣର, ପ୍ରତ୍ୟହ କୌଣସିମତେ ଦୁଇଥର ଉଦର ପୂର୍ତ୍ତି କରିବା ସମ୍ଭବ ହୁଏ ନାହିଁ; ଅଭାବ, ଅସୁବିଧା, ଦୁଃଖ, ଶୋକ ଅବିରତ ଲାଗି ରହିଛି, ସେଠାରେ ଲୋକସଂଖ୍ୟା ଅତି

କ୍ଷିପ୍ରଗତିରେ ବଢ଼ିଚାଲିଛି । ଜୀବନରେ ଆନନ୍ଦ ଉପଭୋଗ ଲାଗି ଯାହାଙ୍କର ଅନ୍ୟ କୌଣସି କ୍ଷେତ୍ର ପ୍ରାୟ ନାହିଁ, ତାଙ୍କର ସନ୍ତାନ-ସୃଷ୍ଟିହିଁ ଏକମାତ୍ର ସମ୍ଭୋଗ । ଆମର ଏ ଦରିଦ୍ର ଭାରତବର୍ଷ ତା'ର ପ୍ରକୃଷ୍ଟ ନିଦର୍ଶନ ।

ଭାରତବର୍ଷରେ ଆଧୁନିକ ଢଙ୍ଗରେ ସେନ୍‌ସସ୍ ବା ଜନଗଣନା କରାଗଲା ପ୍ରଥମେ ୧୮୭୨ ଖ୍ରୀଷ୍ଟାବ୍ଦରେ । ତା' ପୂର୍ବରୁ ଏପରି ବ୍ୟାପକ ଭାବରେ ନିର୍ଦ୍ଦିଷ୍ଟ ଗଣନା କରାଯାଇ ନ ଥିଲା । ଐତିହାସିକମାନେ ନାନା-ପ୍ରକାର ପ୍ରମାଣ ଉପରେ ନିର୍ଭର କରି ଭିନ୍ନ ଭିନ୍ନ ସମୟରେ ଲୋକସଂଖ୍ୟା ନିରୂପଣ କରିଛନ୍ତି । ମୋରଲାଣ୍ଡଙ୍କ ହିସାବ ଅନୁସାରେ ଅକବରଙ୍କ ମୃତ୍ୟୁସମୟରେ ଭାରତବର୍ଷର ଲୋକସଂଖ୍ୟା ଥିଲା ୧୦ କୋଟି । ସେଥିରୁ ବଢ଼ି ବଢ଼ି ପ୍ରାୟ ଦେଢ଼ଶହ ବର୍ଷ ପରେ ୧୩ କୋଟି ହେଲା ଏବଂ ୧୮୫୦ ମସିହା ବେଳକୁ ହେଲା ୧୫ କୋଟି । ଏ ସବୁ ମୋଟାମୋଟି ହିସାବ ଆନୁସଙ୍ଗିକ ପ୍ରମାଣ ଉପରେ ନିରୂପିତ ହୋଇଛି । ୧୮୭୨ ମସିହାରେ ଯେତେବେଳେ ପ୍ରଥମ ସେନ୍‌ସସ୍ ନିଆଗଲା, ସେଥିରେ ଦେଖାଗଲା ଭାରତର ଲୋକସଂଖ୍ୟା ୨୦ କୋଟିରୁ ଅଧିକ । ତିନିଶତ ବର୍ଷରୁ ଅଳ୍ପ ସମୟ ମଧ୍ୟରେ ...ଦେଶର ଲୋକସଂଖ୍ୟା ଦୁଇଗୁଣ ହୋଇଗଲା । ଏପରି ସଂଖ୍ୟାବୃଦ୍ଧି ଅବିରତ ଚାଲିଛି । ଏବେ କିନ୍ତୁ ଗଲା ୪୦ ବର୍ଷ ମଧ୍ୟରେ ବୃଦ୍ଧିର ହାର ଖୁବ୍ ଅଧିକ ହୋଇଯାଇଛି । ୧୯୦୧ ମସିହାରେ ୨୯ କୋଟିରୁ ୧୯୩୧ ବେଳକୁ ହେଲା ୩୫ କୋଟି ଏବଂ ତା' ପରେ ୧୦ ବର୍ଷ ମଧ୍ୟରେ ୧୯୪୧ ମସିହାର ସେନ୍‌ସସ୍ ଅନୁଯାୟୀ ଏ ଦେଶର ଲୋକସଂଖ୍ୟା ୩୯ କୋଟି । ପ୍ରଥମ ସେନ୍‌ସସ୍‌ରୁ ଏ ପର୍ଯ୍ୟନ୍ତ ମାତ୍ର ୭୦ ବର୍ଷରୁ କିଛି ଅଧିକ କାଳ ଭିତରେ ଲୋକସଂଖ୍ୟା ପୁଣି ଦୁଇଗୁଣ ହୋଇଗଲାଣି ।

କଥା ଅଛି କଳିଯୁଗରେ ବହୁସନ୍ତାନ ପାଇବା ଅତି ଦୁଃଖ । ଋଷିମାନେ ନିଶ୍ଚୟ ବିଶ୍ୱାସଘାତକତାର ଏହି ଦଣ୍ଡ କଳ୍ପନା କରିଥିଲେ । ଆଶ୍ଚର୍ଯ୍ୟର କଥା, ଧନୀ ସଚ୍ଛଳ ପରିବାରରେ, ଯେଉଁଠାରେ ସନ୍ତାନ ପାଇଁ ଅଶେଷ ଆଗ୍ରହ, ସେଠାରେ ହୁଅନ୍ତି ଜନ୍ମ କମ୍; ମାତ୍ର ଦୁସ୍ଥ ଦରିଦ୍ର ପରିବାରରେ କାହିଁ

କେତେ ଅସି ଅଯାଚିତ ଭାବରେ ଜନ୍ମ ହୁଅନ୍ତି । ପୂର୍ବେ କୁହାଯାଇଛି, ପଶ୍ଚିମ ଇଉରୋପ ପରି ସମୃଦ୍ଧିଶାଳୀ ଦେଶମାନଙ୍କରେ ଲୋକସଂଖ୍ୟା ବୃଦ୍ଧି ପାଇବା ତ ଦୂରର କଥା, କେତେକ ସ୍ଥାନରେ ବରଂ ହ୍ରାସ ଲଭୁଛି । ମାତ୍ର ଚୀନ ଓ ଭାରତ ପରି ଦରିଦ୍ର ଦେଶରେ ସଂଖ୍ୟା ବୃଦ୍ଧି ଏତେ ଅଧିକ । ଏଇ ଭାରତବର୍ଷରେ, ପାର୍ସି ସମ୍ପ୍ରଦାୟରେ ପ୍ରାୟ ସମସ୍ତେ ଧନବନ୍ତ—ମାତ୍ର ତାଙ୍କର ଲୋକସଂଖ୍ୟା ବର୍ଷ ବର୍ଷ ଧରି ପ୍ରାୟ ଏକଲକ୍ଷ ରହୁଛି ।

ଏ ଦେଶରେ ମୃତ୍ୟୁର ହାର ଅତି ଭୟାବହ । ପ୍ରତି ହଜାରକେ ହାରାହାରି ବାର୍ଷିକ ୨୪ ଜଣ ମୃତ୍ୟୁର କବଳରେ ପଡ଼ନ୍ତି । ଇଂଲଣ୍ଡରେ କେବଳ ୧୨—ଆମେରିକା ଓ ଜର୍ମାନୀରେ ୧୧ । ଆମ ଦେଶରେ ମୃତ୍ୟୁସଂଖ୍ୟା ଯେପରି ଅଧିକ, ଜନ୍ମ ସଂଖ୍ୟା ସେ ତୁଳନାରେ ଆହୁରି ବେଶି । ପ୍ରତି ହଜାରରେ ଏ ଦେଶରେ ୩୪ ଶିଶୁ ଜନ୍ମ ହୁଅନ୍ତି । ବାସଶୂନ୍ୟ ହୋଇ ଭୂମିବାସରେ ରହି ଶୁଦ୍ଧା ସନ୍ତାନ ସୃଷ୍ଟି କରିବା ଏ ଦେଶର ଯେପରି ବିଶେଷତ୍ୱ । ସ୍ନିଗ୍ଧ ଶୀତଳ ତରୁତଳ ଯେତେ ରମଣୀୟ ହେଲେ ମଧ୍ୟ, ରାସ୍ତାପାଖ ଗଛମୂଳ ଯାହାଙ୍କର ଆଶ୍ରୟ ସ୍ଥଳ, ମୁଷ୍ଟିଭିକ୍ଷା ଯାହାଙ୍କର ସମ୍ବଳ, ସେମାନଙ୍କ ମଧ୍ୟରେ ଅଗଣିତ ଶିଶୁ ସୃଷ୍ଟି କୌଣସି ଜାତି ପକ୍ଷରେ ଗୌରବର ବିଷୟ ହୋଇ ନ ପାରେ । ମାନବ ଶିଶୁ ଏ ଦେଶରେ ଅତି ହେୟ, ଇତର ପ୍ରାଣୀଙ୍କଠାରୁ ମଧ୍ୟ ହୀନଭାବରେ ଜନ୍ମହୋଇ ଜୀବନ ଧାରଣ କରେ ।

ଏଇ ଦୃଷ୍ଟିରୁ ବିଚାର କରିବାକୁ ହେବ, ଲୋକସଂଖ୍ୟା ଜୁଆର ପରି ବଢ଼ିଚାଲିଛି, ଦେଶର ଧନସମ୍ପଦ ସେଇ ପରିମାଣରେ ବୃଦ୍ଧି ପାଉଛି କି ? ଦେଶର କୃଷି, ଶିଳ୍ପ, ବାଣିଜ୍ୟ ତଦନୁଯାୟୀ ପ୍ରସାର ଲାଭ କରୁଛି ତ ? କେବଳ ଲୋକସଂଖ୍ୟା ବଢ଼ିଛି ନା କମିଛି, ଏତିକି ହିସାବ ରଖିବାରେ କିଛି ଅର୍ଥ ନାହିଁ । ଦେଶର ଧନସମ୍ପଦ ଯଦି ତା' ଠାରୁ ଅଧିକ ହାରରେ ବଢ଼ିଥାଏ, ତେବେ ଏ ସଂଖ୍ୟାବୃଦ୍ଧି ଅତି ଆନନ୍ଦର ବିଷୟ । ମାତ୍ର ତା ଯଦି ନ ହୋଇଥାଏ, ତେବେ ଦୁଃଖ ଦୁର୍ଦ୍ଦଶା ଅବଶ୍ୟମ୍ଭାବୀ । ବ୍ରହ୍ମଦେଶରେ

ବସ୍ତୀର୍ଣ୍ଣ ଜମି ପଡ଼ ରହିଥିଲା । ଲୋକସଂଖ୍ୟା ଅତି ଅଳ୍ପ; ସମସ୍ତ ଜମି ଚାଷ କରିବା ସମ୍ଭବ ହେଉନାହିଁ । ଭାରତବର୍ଷରୁ ଲୋକ ଯାଇ ସେଠାରେ ପ୍ରଚୁର ଧାନ୍ୟ ଉତ୍ପନ୍ନ କଲେ । ଏପରି ଅବସ୍ଥାରେ ଲୋକସଂଖ୍ୟା ବଢ଼ିବା ଦେଶ ପକ୍ଷରେ ମଙ୍ଗଳ । ଭାରତବର୍ଷରେ ଏ ସଂଖ୍ୟା-ବୃଦ୍ଧି ଫଳରେ ଧନ ସମ୍ପଦର ଅଭାବ କି ଧରଣର ହେଉଛି, ତାହାହିଁ ଆଲୋଚନା କରିବାର କଥା । ୩୯ କୋଟି ଲୋକଙ୍କ ପାଇଁ ଯଥେଷ୍ଟ ଖାଦ୍ୟ ଏ ଦେଶରେ ଅଛି ତ ?

ଭାରତବର୍ଷର ସବୁ ପ୍ରଦେଶ ଓ ଦେଶୀୟ ରାଜ୍ୟରେ ଯେପରି, ଓଡ଼ିଶାରେ ମଧ୍ୟ ସେହିପରି ଲୋକସଂଖ୍ୟା ବଢ଼ି ଚାଲିଛି । ୧୯୩୧ ମସିହାରେ ଓଡ଼ିଶାରେ ଲୋକସଂଖ୍ୟା ଥିଲା ୮୦ ଲକ୍ଷ । ଦଶବର୍ଷ ମଧ୍ୟରେ ବଢ଼ି ବଢ଼ି ୧୯୪୧ ସେନ୍‌ସସ୍ ବେଳକୁ ହେଲା ୮୭ ଲକ୍ଷ । ୧୦ ବର୍ଷ ଭିତରେ ୭ ଲକ୍ଷ ଅର୍ଥାତ୍ ବର୍ଷକୁ ହାରାହାରି ଓଡ଼ିଶାରେ ଲୋକସଂଖ୍ୟା ୭୦ ହଜାର ହିସାବରେ ବଢ଼ିଚାଲିଛି । କଟକ ସହରରେ ଯେତିକି ଲୋକ ବାସ କରନ୍ତି, ବର୍ଷକୁ ବର୍ଷ ପ୍ରାୟ ସେତିକି ଅଧିକ ଲୋକଙ୍କର ଜୀବନଧାରଣ ଓ ସୁଖସ୍ୱାଚ୍ଛନ୍ଦ୍ୟର ବନ୍ଦୋବସ୍ତ ଲାଗି ଓଡ଼ିଶା ପ୍ରଦେଶର ଦାୟିତ୍ୱ । ଧନସମ୍ପଦ ଏହି ପରିମାଣରେ ବଢ଼ୁଛି ତ ? ଏହି ଦଶ ବର୍ଷ ମଧ୍ୟରେ ଓଡ଼ିଶାର ସମ୍ପଦ କି ପରିମାଣରେ ବୃଦ୍ଧି ପାଇଛି, କି ହାରରେ କ୍ରମବିକାଶ ହେଉଛି, ଲୋକସଂଖ୍ୟା ଅନୁପାତ ହିସାବରେ ସେ ପ୍ରସଙ୍ଗର ଆଲୋଚନା କରିବା ଉଚିତ । ଏ ସମସ୍ତଙ୍କର ଖାଇବାଲାଗି ଉତ୍କଳରେ ଉପଯୁକ୍ତ ଆୟୋଜନ ହୋଇଛି ତ ?

---

# ଆମର କଣ ଭୂସମ୍ପଦ ନାହିଁ ?

ଭାରତବର୍ଷ ଗୋଟିଏ ଶ୍ରେଷ୍ଠ ମହାଦେଶ । ରୁଷିଆକୁ ବାଦ୍‌ଦେଲେ ସମଗ୍ର ଇଉରୋପ ସଙ୍ଗେ ଏ ଦେଶ ସମାନ—ବିସ୍ତୃତି ହିସାବରେ ଏ ଦେଶର କ୍ଷେତ୍ରଫଳ ଶହେ କୋଟି ଏକରରୁ ବେଶି । ସେଥିମଧ୍ୟରୁ ପାହାଡ଼, ପର୍ବତ, ଜଙ୍ଗଲ, ନଦୀ, ହ୍ରଦ, ଅନାବାଦୀ, ଅକର୍ମଣ୍ୟ ଜମି ଛାଡ଼ିଦେଲେ ବାକୀ ପ୍ରାୟ ୨୮ କୋଟି ଏକର ଜମିରେ ଚାଷ ହୁଏ । ଲୋକସଂଖ୍ୟା ହିସାବରେ ଦେଖିଲେ ପ୍ରତି ଦଶଜଣଙ୍କ ଲାଗି ଚାଷଜମି ଆମ ଦେଶରେ ପ୍ରାୟ ସାତ ଏକର – ଜଣପିଛା ମୋଟେ ଏକରକର ତିନିଭାଗରୁ ଦୁଇଭାଗ । ଏଇମାତ୍ର ସମ୍ପଦ ଉପରେ ବିଶେଷ ଭାବରେ ନିର୍ଭର କରେ ଆମର ଜୀବନଧାରଣ, ସୁଖସ୍ୱାଚ୍ଛନ୍ଦ୍ୟ, ଆନନ୍ଦ ଉପଭୋଗ ।

କେହି କହି ପାରନ୍ତି, ଆମ ଦେଶରେ ଏକ ବର୍ଗମାଇଲ ସ୍ଥାନ ମଧ୍ୟରେ ବାସ କରନ୍ତି, ହାରାହାରି ୨୪୬ ଜଣ । ମାତ୍ର ସେତିକି ସ୍ଥାନରେ ବିଲାତରେ ଅଛନ୍ତି ୪୯୫ ଜଣ, ଜାପାନରେ ୪୩୯ ଜଣ । ପଶ୍ଚିମ ଇଉରୋପରେ ସବୁ ଦେଶରେ ବର୍ଗମାଇଲ ପ୍ରତି ଲୋକସଂଖ୍ୟା ଭାରତବର୍ଷଠାରୁ ଅନେକ ବେଶି । ସେ ଦେଶରେ ଲୋକଙ୍କର ଅବସ୍ଥା କଣ ଆମଠାରୁ ହୀନ ? ଧନ ସମ୍ପଦ ହିସାବରେ ସେସବୁ ଦେଶ ସଙ୍ଗେ ଭାରତବର୍ଷର

ତୁଳନା ହେବ ନା ? ଏପରି ତୁଳନା କରି ଦେଖିବାରେ କିଛି ଲାଭ ନାହିଁ—ଏ ସବୁ ନିରର୍ଥକ । ଅଧିକ ଜନ-ବହୁଳ ଦେଶର ଦୃଷ୍ଟାନ୍ତ ଦେଇ ଭାରତବର୍ଷର ଜନସଂଖ୍ୟାରେ ଅସ୍ୱସ୍ତି ବା ଆନନ୍ଦ ବୋଧ କରିବା ଅଛି ବିଡ଼ମ୍ବନା । ଇଂଲଣ୍ଡ, ଜର୍ମାନି, ହଲାଣ୍ଡ, ବେଲଜିଅମ୍ ପ୍ରଭୃତି ବିଶିଷ୍ଟ ଶିଳ୍ପ-ପ୍ରଧାନ ଦେଶ । କଳ କାରଖାନାରେ ପ୍ରସ୍ତୁତ ଅଜସ୍ର ଜିନିଷ ବିନିମୟରେ ପୃଥିବୀର ଯେ କୌଣସି ସ୍ଥାନରୁ ଖାଦ୍ୟ ଓ ପଣ୍ୟଦ୍ରବ୍ୟ ସେମାନେ ଅବାଧରେ ପାଇ ପାରନ୍ତି । କଳ କାରଖାନା ଲାଗି ବିସ୍ତୃତ ଭୂମିର ଆବଶ୍ୟକତା ନାହିଁ । ତେଣୁ ସେସବୁ ଦେଶରେ ଜନବହୁଳତା ଦାରିଦ୍ର୍ୟ ସୃଷ୍ଟି କରେ ନାହିଁ—ସମୃଦ୍ଧିର ସହାୟକ ହୁଏ ।

ଆମ ଦେଶରେ ଶତକଡ଼ା ୭୩ ଜଣ କୃଷି ଉପରେ ନିର୍ଭର କରନ୍ତି । କୃଷି ଏ ଦେଶର ବିଶିଷ୍ଟ ସମ୍ବଳ । ତେଣୁ ଜଣ ପିଛା ଜମିର ପରିମାଣ ମାତ୍ର ½ ଏକର ହେଲେ ଲୋକଙ୍କର ଅବସ୍ଥା ହେବ କ'ଣ ? ଲୋକସଂଖ୍ୟା ବଢ଼ି ଚାଲିଛି—ସେଥି ସଙ୍ଗେ ସଙ୍ଗେ କ୍ରମଶଃ ଜମିର ଅନୁପାତ କମି ଚାଲିଛି । ତେଣୁ ଅଭାବ ଅନାହାର ଅବିରତ ବଢ଼ି ଚାଲିଛି । ଏଥିରୁ ବୁଝିବାକୁ ହେବ, ଭାରତବର୍ଷ ଅତ୍ୟନ୍ତ ଲୋକାରଣ୍ୟ । ଏତେ ଲୋକଙ୍କର ଜୀବନଧାରଣ, ସୁଖ ସ୍ୱାଚ୍ଛନ୍ଦ୍ୟ ଲାଗି ଏ ଦେଶରେ ଧାନସମ୍ପଦ ନାହିଁ । ବର୍ତ୍ତମାନର ଅର୍ଥନୈତିକ ପରିସ୍ଥିତି ଆଲୋଚନା କରି ଦେଖିଲେ ଏ ସିଦ୍ଧାନ୍ତ ନିଶ୍ଚିତ । ଶିଳ୍ପ ସମ୍ଭାର ଲାଗି ଏ ଦେଶ ଉପଯୋଗୀ ନୁହେଁ ବା ପ୍ରଚୁର ଧାନ୍ୟ ଉତ୍ପାଦନ ଏ ଦେଶରେ ଅସମ୍ଭବ—ଏ କଥା କେହି କହିବେ ନାହିଁ । ବାସ୍ତବରେ ଶିଳ୍ପର ପ୍ରସାର ପାଇଁ ଆମର ବିସ୍ତୃତ କ୍ଷେତ୍ର ରହିଛି । ଆଧୁନିକ ବୈଜ୍ଞାନିକ ରୀତିରେ ଧନ ଉତ୍ପାଦନ ଲାଗି ଏବେ ମଧ୍ୟ ବିଶେଷ ଉଦ୍ୟମ ହୋଇନାହିଁ । ସେ ସବୁ ହୋଇ ପାରିଲେ ଏ ଦେଶ ଆହୁରି ଅଧିକ ଲୋକଙ୍କ ଲାଗି ଅଶେଷ ସୁଖ ସ୍ୱାଚ୍ଛନ୍ଦ୍ୟର ବ୍ୟବସ୍ଥା କରି ପାରିବ—ଏ କଥା କେହି ଅସ୍ୱୀକାର କରିବେ ନାହିଁ । ମାତ୍ର ପୂର୍ବେ ଆମର ବିଭବ ଥିଲା, ଭବିଷ୍ୟତରେ ଅତୁଳ ସମ୍ପଦର ସମ୍ଭାବନା ଅଛି—ଏ କଥା କହିଲେ ବା ଶୁଣିଲେ ବର୍ତ୍ତମାନ ଦୁଃଖୀର ଉଦର ପୂର୍ତ୍ତି ହୋଇଯିବ ନାହିଁ । ଯାହା ଅଛି, ସେଥିପ୍ରତି ଦୃଷ୍ଟି ଦେଇ

ବିଚାର କଲେ ସହଜରେ ଦେଖାଯିବ, ଜନବହୁଳତା ଆମ ଦେଶରେ ଦାରିଦ୍ର୍ୟର ଏକ ବିଶିଷ୍ଟ କାରଣ ।

ପ୍ରାୟ ୨୮ କୋଟି ଏକର ଜମିରେ ଆମର କୃଷି ହୁଏ । ପଡିଆ ଜମି ଅଛି ପ୍ରାୟ ୬ କୋଟି ଏକର । ତା'ଛଡ଼ା କର୍ଷଣର ଅନୁପଯୋଗୀ ନୁହେଁ, ଅଥଚ ଅକାରଣରେ ଅକର୍ଷିତ ଭାବରେ ପଡ଼ି ରହିଛି ୧୧ କୋଟି ଏକର । ଭାରତବର୍ଷ ପରି କୃଷିପ୍ରଧାନ ଜନବହୁଳ ଦେଶରେ ୧୧ କୋଟି ଏକର ଜମି ଏପରି ଅନାବାଦୀ ଭାବରେ ପଡ଼ି ରହିବା ଅତ୍ୟନ୍ତ ପରିତାପର କଥା । ସେଥିରେ କେଉଁ ଜମିରେ କପରି ଭାବରେ କୃଷି କରାଯିବା ସମ୍ଭବ, ସେ କଥା ସରକାରଙ୍କର ଅନୁସନ୍ଧାନ କରି ଦେଖିବା ଆବଶ୍ୟକ । ଏ କଥା ଲୋକଙ୍କର ବ୍ୟକ୍ତିଗତ ଉଦ୍ୟମ ଉପରେ ଛାଡ଼ିଦେଲେ ଚଳିବ ନାହିଁ । ନିର୍ଦ୍ଦିଷ୍ଟ ଯୋଜନା ବ୍ୟତିରେକେ ଏ ଦିଗରେ ବିଶେଷ ଅଗ୍ରସର ହେବା ସମ୍ଭବ ହେବ ନାହିଁ । ଜଳସେଚନ ଓ ନିଷ୍କାସନର ବ୍ୟବସ୍ଥା କରାଯାଇ ପାରିଲେ ସେଥିରୁ ଅନେକ ଜମି ଯେ ଆବାଦୀ ହୋଇ ପାରିବ, ଏଥିରେ ସନ୍ଦେହ ନାହିଁ । ପଞ୍ଜାବ ଓ ସିନ୍ଧୁ ପ୍ରଦେଶରେ ଅପର୍ଯ୍ୟାପ୍ତ ଜମି ମରୁଭୂମି ଭାବରେ ପଡ଼ି ରହିଥିଲା । ପଞ୍ଚନଦୀ ସୃଷ୍ଟି କରୁଥିଲେ ଖାଲି ବନ୍ୟା । ସେହି ମରୁଭୂମିରେ କେବେ ଯେ ଫସଲ ପୁଣି ସମ୍ଭବ ହେବ, ଏ କଥା କେହି କେବେ କଳ୍ପନା କରୁ ନ ଥିଲେ । ସେଠାରେ ବୃଷ୍ଟିର ପରିମାଣ ଅତି ଅଳ୍ପ । ସିନ୍ଧୁ ଏବଂ ପଞ୍ଚନଦୀରୁ ଜଳ ସେଚନର ବ୍ୟବସ୍ଥା କରାଯାଇ ସେ ସକଳ ଜମି ଆଜି କୃଷି ସମ୍ପଦରେ ହସି ଉଠୁଛି । ୧୯୩୨ ମସିହା ଜାନୁଆରୀ ମାସରେ ସିନ୍ଧୁ ପ୍ରଦେଶରେ ସକ୍କର ବାରେଜ୍ କାର୍ଯ୍ୟର ଶେଷ ହେଲା । ଏ ଯେଉଁ ବିରାଟ ବନ୍ଧ ସିନ୍ଧୁ ନଦୀର ବକ୍ଷରେ ନିର୍ମାଣ କରା ଯାଇଛି, ତାହା ଆଜି ପୃଥିବୀରେ ବିଖ୍ୟାତ । ଏଥିଲାଗି ଓଡ଼ିଶା ପରି ଏକ କ୍ଷୁଦ୍ର ପ୍ରଦେଶ ସିନ୍ଧୁ ଆଜି ସମୃଦ୍ଧିଶାଳୀ । ଗଲା ୧୫ ବର୍ଷ ମଧ୍ୟରେ ପଞ୍ଜାବ ଓ ସିନ୍ଧୁ ପ୍ରଦେଶରେ କୃଷି-ସମ୍ପଦ କଳ୍ପନାତୀତ ଭାବରେ ପ୍ରସାର ଲାଭ କରିଛି । ଜଳସେଚନର ବ୍ୟବସ୍ଥା ହୋଇ ପାରିଲେ ଏଇ ଅନାବାଦୀ ୧୧ କୋଟି ଏକର ଜମିରୁ ଅନେକ ଜମି ଶସ୍ୟଶ୍ୟାମଳା ହୋଇ ଉଠିବ । ବର୍ଷ ବର୍ଷ ଧରି ନିରାଶ

ନଯ୍ଯୂନରେ ନଦୀର ବନ୍ୟାକୁ ନରେଖି ରହୁବାର ଦନ ଅଛ ଏ ଦେଶରେ ରହୁବ କେତେ କାଳ ? ଏଥିପାଇଁ ଇତ୍ଭୂଳ୍ ବ୍ୟବସ୍ଥା ଦରକାର । ଏ ୧୧ କୋଟି ଏକର ଜମିର ଯେତେ ସମ୍ଭବ ଅବାଦୀ କରିବାକୁ ହେବ । ଯେ କୌଣସି ଯୋଜନା ବା ସଗଠନରେ ଏଥିପ୍ରତି ବଶେଷ ଦୃଷ୍ଟି ପଡ଼ବା ଆବଶ୍ୟକ ।

ଏହାଛଡ଼ା ପୁଣି ୭ କୋଟି ଏକର ଭୂମି ପଡ଼ଆ, ଅନାବାଦୀ ବା ଗୋ-ଚର ଭାବରେ ପଡ଼ ରହୁଛ । ଏ ସବୁ ଜମିରେ ଯଦ ଗୋରୁ ମଇଁଷିଙ୍କ ପାଇଁ ଯଥେଷ୍ଟ ଖାଦ୍ୟ ଉତ୍ପାଦନ କରାଯାଉଥାନ୍ତା, ତେବେ ଏ ଦେଶର ଅବସ୍ଥା ଅନ୍ୟ ପ୍ରକାର ହୋଇଥାନ୍ତା । ମାତ୍ର ଏଥିରୁ ଅଧିକାଂଶ ଜମି ଅକର୍ମଣ୍ୟ ଭାବରେ ପଡ଼ ରହୁଛ । ଗୋ ମହୁଷାଦ ପଶୁ ଆମ ଦେଶରେ ୨୦ କୋଟିରୁ ବେଶି । ଲୋକସଂଖ୍ୟା ହିସାବରେ ଦେଖିଲେ ପ୍ରତି ଦୁଇଜଣଙ୍କ ପିଛ ଏପରି ପଶୁ ଗୋଟିଏ । ମାତ୍ର ଏଥି ମଧ୍ୟରୁ ମୋଟେ ୭ କୋଟି ପଶୁ କାର୍ଯ୍ୟକ୍ଷମ । ଚାଷଜମି ଅନୁପାତରେ ହିସାବ କରି ଦେଖିଲେ ହଳେ ବଳଦଙ୍କ ଦ୍ୱାରା ହାରାହାରି ୧୦ ଏକର ଜମି ଚାଷ କରିବାକୁ ହୁଏ । ଏଥିରେ ଜମିର ଉପଯୁକ୍ତ କର୍ଷଣ ହେବ କପରି ? ଅନ୍ୟାନ୍ୟ ଦେଶରେ କୃଷି ପାଇଁ କେତେ-ପ୍ରକାର ବୈଜ୍ଞାନିକ ପ୍ରଣାଳୀ ଉଦ୍ଭାବିତ ହେଉଛି, ମାତ୍ର ଆମ ଦେଶରେ ସେଇ ମାଙ୍କାଡା ଅମଳର ଚାଷ—ସେଥିରେ ପୁଣି କାର୍ଯ୍ୟକ୍ଷମ ଗୋରୁ ମଇଁଷି ମଧ୍ୟ ଯଥେଷ୍ଟ ନାହାନ୍ତି ।

ତା ପରେ ଦୁଧ ଘିଅର କଥା ବିଚାର କରାଯାଉ । ଦୁଧ ଘିଅ କମେ କମେ ସ୍ୱପ୍ନ ହେବାକୁ ବସିଲାଣି । ଗଛ ଘିଅ ହେଲାଣି କା'ର । ଦୁଧଘିଅ ବିନା ଶାନ୍ତି ଆସିବ କାହିଁ ? ପୁଣି ଭାରତବର୍ଷ ପରି ଦେଶରେ, ଯେଉଁଠାରେ ଅନେକ ନିରାମିଷାଶୀ ବା ଯଥେଷ୍ଟ ମାଛ ମାଂସ ଖାନ୍ତି ନାହିଁ, ସେ ଦେଶରେ ଦୁଧ ଘିଅର ଆବଶ୍ୟକତା ଆହୁରି ଅଧିକ । ପୂର୍ବେ କୁହାଯାଇଛି, ଏ ଦେଶରେ ଗୋରୁ ମଇଁଷିଙ୍କର ସଂଖ୍ୟା ୨୦ କୋଟିରୁ ଅଧିକ । ପୃଥିବୀରେ ଏ ଜାତିର ପଶୁ ଯେତେ ଅଛନ୍ତି, ସେଥିରୁ ଶତକଡ଼ା ୨୯ ପର୍ଯ୍ୟନ୍ତ ଅଛନ୍ତି

ଭାରତବର୍ଷରେ—ଅର୍ଥାତ୍ ସାରା ପୃଥିବୀରେ ଗୋରୁ ମଇଁଷିଙ୍କ ମଧ୍ୟରେ ଖାଲି ଅମ ଦେଶରେ ଅଛନ୍ତି ପ୍ରାୟ ଛଅ ଭାଗରୁ ଭାଗେ, ମାତ୍ର ଅମେ ଦୁଧ ପାଉଁ କେତେ ? ଏକତୃତୀୟାଂଶ ପଶୁ ରଖି ମଧ୍ୟ ପୃଥିବୀରେ ଯେତେ ଦୁଧ ଉତ୍ପନ୍ନ ହୁଏ ସେଥିରୁ ଶତକଡା ୧୨ ଅର୍ଥାତ୍ ପ୍ରାୟ ଦଶଭାଗରୁ ଭାଗେ ଦୁଧ ଅମ୍ଭେମାନେ ପାଉଁ । ଅମ ଗୋରୁ ଖାଲି ମୁଣ୍ଡଗଣତି ପାଇଁ । ଉପଯୁକ୍ତ ଖାଦ୍ୟ ନ ପାଇଲେ ବଳଦ ଚୃଷ କରି ପାରିବ ନାହିଁ କି ଗାଈଠାରୁ ଦୁଧ ମିଳିବା ସମ୍ଭବ ହେବ ନାହିଁ । ଏ ଦେଶରେ ଯେପରି ପୁରୁଷଙ୍କଠାରୁ ଖାଦ୍ୟର ଅବଶିଷ୍ଟ ରହିଲେ ସ୍ତ୍ରୀ ଲୋକମାନଙ୍କ ଭାଗରେ ପଡ଼େ, ସେହିପରି ଗୋରୁଗାଈଙ୍କ ପାଇଁ ଯାହା କିଛି ଖାଦ୍ୟ ପଦାର୍ଥ ମିଳେ, ସେଥିରୁ ବଳଦଙ୍କ ପାଇଁ ବ୍ୟବସ୍ଥା ହୋଇସାରିଲେ ଅବଶିଷ୍ଟ ଅତି ଅଳ୍ପ ମାତ୍ର ଗାଈଙ୍କ ଭାଗରେ ପଡ଼େ । ଫଳରେ ଦୁଧ ଘିଅ ମିଳିବ କାହୁଁ ? ଅଳ୍ପ କେତେଜଣ ଭାଗ୍ୟବାନ୍ ଲୋକଙ୍କୁ ବାଦ୍ ଦେଲେ ସାଧାରଣ ଭାରତବାସୀଙ୍କର ଦୁଧଘିଅ ସଙ୍ଗେ ବିଶେଷ ସାକ୍ଷାତ୍ ହୁଏନାହିଁ । ଖାଲି ହରିଅନା ଗାଈ ଓ ଷଣ୍ଢ ବିଷୟରେ ଜୋର ସୋର ପ୍ରଚାର ଚଳାଇଲେ ଏହାର ସମାଧାନ ହୋଇ ପାରିବ ନାହିଁ । ଗୋରୁ ମଇଁଷିଙ୍କ ପାଇଁ ପ୍ରଚୁର ଖାଦ୍ୟ ଆବଶ୍ୟକ । ସେମାନଙ୍କ ଲାଗି ଯେ ନିର୍ଦ୍ଦିଷ୍ଟ ଭାବରେ ଜମିରେ ଖାଦ୍ୟ ଉତ୍ପାଦନ କରିବା ଆବଶ୍ୟକ, ଏ କଥା କ୍ୱଚିତ୍ କୃଷକ ବୁଝନ୍ତି । ଏତେ ଅପର୍ଯ୍ୟାପ୍ତ ଭୂମି ଅନାବାଦୀ ପଡ଼ିଥିବା ସ୍ଥଳେ ପଶୁ ଖାଦ୍ୟର ଏପରି ଅଭାବ ଅତ୍ୟନ୍ତ ବିଡ଼ମ୍ବନା । ପଶୁ ଖାଦ୍ୟର ଆବଶ୍ୟକତା ସମ୍ବନ୍ଧରେ ଖାଲି ପ୍ରଚାର ହେଲେ ଚଳିବ ନାହିଁ । ସେଥିଲାଗି ପ୍ରତ୍ୟେକ ମୌଜାରେ, ଭୂମି ନିର୍ଦ୍ଦିଷ୍ଟ ରଖିବାକୁ ହେବ ଏବଂ ସେଥିରେ ଆବଶ୍ୟକ ପଶୁ-ଖାଦ୍ୟ ଉତ୍ପାଦନର ବ୍ୟବସ୍ଥା କରିବାକୁ ହେବ । ଆରମ୍ଭରୁ ଅନ୍ତତଃ ଏଥିଲାଗି ସରକାର ତତ୍ତ୍ୱାବଧାନ ଆବଶ୍ୟକ ।

ଅନେକ ସ୍ଥାନରେ ଏବେ ସୁଦ୍ଧା ଲୋକେ ନିକଟବର୍ତ୍ତୀ ଜଙ୍ଗଲ ସଫାକରି ଚୃଷ ଜମି ତିଆରି କରୁଛନ୍ତି । କୌଣସି ଚିନ୍ତା ନ କରି ଯେ କୌଣସି ସ୍ଥାନରୁ ଇଚ୍ଛା ଅନୁଯାୟୀ ଜଙ୍ଗଲ କାଟି ସଫା କରିଦେବା ଦେଶପକ୍ଷରେ ମଙ୍ଗଳକର ନୁହେ । ଯାହାକୁ ଜମି ଖଣ୍ଡିଏ ମିଳିଲା, ତାର

ଅବଶ୍ୟ ଲାଭ; ମାତ୍ର ସମୁଦ୍ର ବୃଷ୍ଟିରୁ ଏହା ସବୁବେଳେ ହିତକର ନୁହେଁ । ବଣ ଜଙ୍ଗଲରୁ ଖାଲି ଯେ କାଠ ବାଉଁଶ, ହରିଡ଼ା ବାହାଡ଼ା ପ୍ରଭୃତି ବନଜାତ ଦ୍ରବ୍ୟ ମିଳେ, ତାହା ନୁହେଁ । କୌଣସି ସ୍ଥାନର ଜଳବାୟୁ ଏବଂ ବୃଷ୍ଟିର ପରିମାଣ ଅନେକ ଅଂଶରେ ପାର୍ଶ୍ୱବର୍ତ୍ତୀ ଜଙ୍ଗଲ ଉପରେ ନିର୍ଭର କରେ । ଖାଲି ସେତିକି ନୁହେଁ, ବନ୍ୟାର ପ୍ରଖର ସ୍ରୋତ ପ୍ରତିରୋଧ କରିବା ଲାଗି ବଣ ଜଙ୍ଗଲ ଏକାନ୍ତ ଆବଶ୍ୟକ । ଗଛପତ୍ର, ବଣ ଜଙ୍ଗଲ କାଟି ସଫା କରିଦେଲେ ଉପରର ନରମମାଟି କମେ ଧୋଇ ହୋଇ ସମୁଦ୍ରକୁ ଚାଲିଯାଏ ଏବଂ କିଛିକାଳ ପରେ ଜମି ସବୁ ଚାଷର ଅଯୋଗ୍ୟ ହୋଇ ପଡ଼େ । ଯୁକ୍ତ ପ୍ରଦେଶରେ ଏ ସମସ୍ୟା ଅତି ଗୁରୁତର ହୋଇ ଉଠିଛି । ଅନେକ ଜମି ଚାଷର ଅଯୋଗ୍ୟ ହୋଇ ପଡ଼ିଲାଣି । ତେଣେ ସୁନ୍ଦରବନର ପରିସର ବଢ଼ି ଚାଲିଛି ।

ଭାରତବର୍ଷର ଦେଶୀୟ ରାଜ୍ୟମାନଙ୍କରେ ଜଙ୍ଗଲ ଅନେକ ବେଶି । ବ୍ରିଟିଶ ଭାରତର କ୍ଷେତ୍ରଫଳ ୧,୧୦୨,୦୦୦ ବର୍ଗମାଇଲ; ସେଥିରୁ ୨୪୬,୦୦୦ ଅର୍ଥାତ୍ ଶତକଡ଼ା ୨୨ ଭାଗ ଜମି ବଣ ଜଙ୍ଗଲ । କୃଷି ବିଶାରଦମାନଙ୍କ ମତରେ ଅତି କମ୍‌ରେ ଶତକଡ଼ା ୨୦ ଭାଗ ଜମିରେ ଜଙ୍ଗଲ ନ ରହିଲେ ଜଳସ୍ରୋତର ପ୍ରତିରୋଧ କରାଯାଇ ପାରିବ ନାହିଁ ବା ଚାଷ ଜମିର ଉର୍ବରତା ରକ୍ଷା କରାଯାଇ ପାରିବ ନାହିଁ । ମଧ୍ୟପ୍ରଦେଶ, ମାନ୍ଦ୍ରାଜ ଏବଂ ଆସାମ—ଏଇ ତିନି ପ୍ରଦେଶକୁ ବାଦ୍‌ଦେଲେ ଅନ୍ୟ ସବୁ ପ୍ରଦେଶରେ ଜଙ୍ଗଲର ପରିମାଣ ଶତକଡ଼ା ୨୦ ଭାଗରୁ କମ । ତେଣୁ ଏପରି କ୍ଷେତ୍ରରେ ଜଙ୍ଗଲ ସଫା କରି ଚାଷ ଜମି ତିଆରି କରିବା ଅର୍ଥନୈତିକ ଅସୁବିଧା ବୋଲି ବୁଝିବାକୁ ହେବ । ଯେ କୌଣସି ସ୍ଥାନରେ ଜଙ୍ଗଲ ସଫା କରିବା ପୂର୍ବରୁ ଏ ବିଷୟ ସମ୍ୟକ୍ ଭାବରେ ବିଚାର କରିବା ଉଚିତ । ଖାଲି ଚାଷଜମି ପାଇଁ ବ୍ୟାକୁଳ ହୋଇ ପଡିଲେ ଅବସ୍ଥା ଅତି ସାଂଘାତିକ ହୋଇ ଉଠିବ ।

---

# ଆମ ଓଡ଼ିଶାର ଅବସ୍ଥା କିପରି ?

ଭାରତବର୍ଷର ମୋଟାମୋଟି ଅବସ୍ଥା ଯାହା, ଓଡିଶାର ଅବସ୍ଥା କଣ ଠିକ ସେହିପରି ? ଓଡିଶାର କ୍ଷେତ୍ରଫଳ ୨୦୧ ଲକ୍ଷ ଏକର । ସେଥିରୁ ୬୧ ଲକ୍ଷ ଏକର ଅର୍ଥାତ୍ ଶତକଡ଼ା ୩୦ ଭାଗ ଜମିରେ ଚାଷ ହୁଏ । ୮୭ ଲକ୍ଷ ଲୋକ ଏ ଦେଶରେ ବାସ କରନ୍ତି—୧୯୪୧ ମସିହାର ଗଣନା ହିସାବରେ । ତେଣୁ ଜଣ ପିଛା ଚାଷଜମି ମୋଟେ ¾ ଏକର । ଅର୍ଥାତ୍ ଭାରତବର୍ଷରେ ଜଣପିଛା ହାରାହାରି ଜମିର ପରିମାଣ ଯାହା, ଓଡ଼ିଶାରେ ଠିକ୍ ସେତିକି । ବମ୍ବେ, ମଧ୍ୟପ୍ରଦେଶ, ପଞ୍ଜାବ ଏବଂ ସିନ୍ଧୁ ପ୍ରଦେଶରେ ଜଣପିଛା ଚାଷଜମି ଓଡ଼ିଶାଠାରୁ ଅନେକ ବେଶି, କେବଳ ବିହାର ଏବଂ ବଙ୍ଗଦେଶରେ ଓଡିଶା ଠାରୁ ମଧ୍ୟ ଅଳ୍ପ । ବିହାରକୁ ଭାରତବର୍ଷର ଉଦ୍ୟାନ ବୋଲି ଆଖ୍ୟା ଦିଆଯାଇଛି । ବଙ୍ଗ ଓ ବିହାର ଏ ଦୁଇ ପ୍ରଦେଶରେ ଜମି ଯେ ଓଡିଶାଠାରୁ ଉର୍ବର ଏକଥା ଜଣା ଶୁଣା । ତେଣୁ ଏଥିରୁ ସ୍ପଷ୍ଟ ବୁଝିବାକୁ ହେବ ଯେ, ଭାରତବର୍ଷର ଅନ୍ୟ ସବୁ ପ୍ରଦେଶ ତୁଳନାରେ ଓଡିଶାର କୃଷିବିଭବ ଲୋକସଂଖ୍ୟା ଅନୁପାତରେ ସନ୍ତୋଷଜନକ ନୁହେଁ ।

ଖାଲି ଚାଷଜମି ନାମରେ ଗଣତି ହେଲେ ଦେଶରେ ସୁଖସମୃଦ୍ଧି ଆପେ ଆପେ ମାଡ଼ି ଆସିବ ନାହିଁ । ଜମି କାମଧେନୁ ନୁହେ । ତା ସଙ୍ଗେ

ସହଯୋଗ ବା ସଂଗ୍ରାମ କରି ସେଥିରୁ ଫଳ ଆଦାୟ କରିବାକୁ ହେବ। ଖାଲି ଅକ୍ଷୟତୃତୀୟା ଦିନ ଦେଖି ଧାନ ମୁଠାଏ ବୁଣି ଦେଇ ନିଶ୍ଚିନ୍ତ ରହିଲେ ଦେଶର ଦୁଃଖ ଅଭାବ ଘୁଞ୍ଚିବ ନାହିଁ। ଓଡ଼ିଶାରୁ ବାହାରି ଦକ୍ଷିଣ, ଉତ୍ତର ବା ପଶ୍ଚିମ ଯେଉଁ ଦିଗକୁ ଗଲେ ବର୍ଷଭିତରେ ପ୍ରାୟ ଯେ କୌଣସି ସମୟରେ ରେଲଗାଡ଼ି ଭିତରୁ ଦେଖିବାକୁ ମିଳେ ଚତୁର୍ଦ୍ଦିଗରେ ନାନା-ଜାତିର ଶସ୍ୟ ସମ୍ପଦ; ମାତ୍ର ଧାନଗଣ୍ଡାକ ଅମଳ ସରିଲେ ଓଡ଼ିଶାର ଗୃହଅଙ୍ଗ ଏକାବେଳକେ ଶୂନ୍ୟ—ମରୁଭୂମି। ପ୍ରତି ଶହେ ଏକର ଚାଷ ଜମିରୁ ଓଡ଼ିଶାରେ ମାତ୍ର ୧୦ ଏକର ଜମିରେ ବର୍ଷଭିତରେ ଏକାଧିକ ଫସଲ ଉତ୍ପନ୍ନ ହୁଏ। ବିହାରରେ ଶତକଡ଼ା ୩୦ ଭାଗ ଏବଂ ବଙ୍ଗଳାରେ ୨୧ ଭାଗ ଜମିରୁ ମିଳେ ଏକାଧିକ ଫସଲ। କେବଳ ବମ୍ବେ ପ୍ରଦେଶକୁ ଛାଡ଼ିଦେଲେ ଅନ୍ୟ ଯେ କୌଣସି ପ୍ରଦେଶ ତୁଳନାରେ ଓଡ଼ିଶାର ଅବସ୍ଥା ଏ ହିସାବରେ ଅନେକ ତଳେ। ବମ୍ବେ ପ୍ରଦେଶରେ ଦୋଫସଲି ଜମି ଅଛି ଅଳ୍ପ। ମାତ୍ର ସେଠାରେ ଜଣପିଛା ଚାଷଜମିର ପରିମାଣ ଅନେକ ବେଶି। ଏଥିରୁ ସ୍ପଷ୍ଟ ବୁଝିବାକୁ ହେବ ଯେ ଭାରତବର୍ଷ ମଧ୍ୟରେ ଲୋକସଂଖ୍ୟା ଅନୁପାତରେ ଓଡ଼ିଶାର କୃଷିସମ୍ପଦ ଅନ୍ୟ ପ୍ରଦେଶମାନଙ୍କଠାରୁ ହୀନ।

ଧାନ ଆମର ପ୍ରଧାନ ଫସଲ। ଏ କଥା ଅଛି ଜଣାଶୁଣା ଯେ ଜଡ଼ା, ଝୋଟ, ଆଖୁ, ତମାଖୁ ପରି ଧାନ ଚାଷ ଲାଭଜନକ ନୁହେଁ। ଅବଶ୍ୟ ବର୍ତ୍ତମାନ ଅବସ୍ଥା ଅନ୍ୟପ୍ରକାର। ଯୁଦ୍ଧ ସମୟ ମଧ୍ୟରେ ନାନାକାରଣରୁ ଖାଦ୍ୟର ଅନାଟନ ଘଟିଲା। ଯୁଦ୍ଧ ସରିଲା—ମାତ୍ର ଖାଦ୍ୟର ଅବସ୍ଥା ଆଦୌ ସୁଧୁରିନାହିଁ। ସବୁ ଖାଦ୍ୟ-ଜିନିଷର ଦରଦାମ ଅସମ୍ଭବ ଭାବରେ ବଢ଼ି-ଯାଇଛି। ଜିନିସ ମଧ୍ୟ ଦୁଷ୍ପ୍ରାପ୍ୟ। ଏପରି ସମୟରେ ଅଧିକ ଖାଦ୍ୟ ଉତ୍ପାଦନ କରିବା ଆବଶ୍ୟକ ହୋଇପଡ଼ିଛି। ସେଥିରେ ମଧ୍ୟ ଲାଭର ପରିମାଣ ଖୁବ୍ ବେଶି। ମାତ୍ର ସାଧାରଣ ସମୟରେ ଧାନଫସଲ ଅନ୍ୟାନ୍ୟ ଫସଲ ପରି ଲାଭଜନକ ହୁଏ ନାହିଁ। ଝୋଟ ଚାଷ କରି ବଙ୍ଗଦେଶର କୃଷି-ସମ୍ପଦ ଅନେକ ବଢ଼ିଯାଇଛି। ଦକ୍ଷିଣ ଭାରତରେ ହୁଏ ପ୍ରଚୁର ତମାଖୁ। ପୂର୍ବେ କୁହାଯାଇଛି, ଏକା ବମ୍ବେ ପ୍ରଦେଶରେ ଦୋଫସଲି ଜମି ଓଡ଼ିଶା ତୁଳନାରେ

ମଧ୍ୟ ଅଳ୍ପ । ମାତ୍ର ସେଠାରେ ଶତକଡ଼ା ୩୦ ଭାଗରୁ ଅଧିକ ଜମିରେ ହୁଏ କପା ଚାଷ । ଏ ସବୁ ଚାଷ ଯେ ଅଧିକ ଲାଭଜନକ, ସେଥିରେ ସନ୍ଦେହ ନାହିଁ । କାହାକୁ କେତେ ଖାଇବାକୁ ମିଳିବ, ସେ କଥା ନିର୍ଭର କରେ ତା'ର ରୋଜଗାର ଉପରେ । ଯେ ଜମିରେ ଧାନ ଚାଷକରେ, ତା' ପାଇଁ ଯେ ବେଶି ଭାତ ମିଳିବ, ଏ କଥା ନୁହେ । ତେଣୁ ଯେଉଁ କୃଷକ ଚାଷକରି ବେଶି ଲାଭ କରି ପାରିଲା, ତା'ର ଅବସ୍ଥା ନିଶ୍ଚୟ ଭଲ, ତା' ପାଇଁ ଖାଦ୍ୟ ମିଳେ ବେଶି । ଓଡ଼ିଶାରେ କିନ୍ତୁ ଏପରି ଲାଭଜନକ ଫସଲ ଅଛି ଅଳ୍ପ । ପୁଣି ଭଲ ଜାତିର ଫସଲ ମଧ୍ୟ ଅତ୍ୟନ୍ତ ଅଭାବ । ଆମ୍ବ, କଦଳୀ, ସପୁରୀ ପର୍ଯ୍ୟନ୍ତ ପଡ଼ୋଶୀ ପ୍ରଦେଶରୁ ଆସି ଓଡ଼ିଶାର ବଜାର ପୂର୍ଣ୍ଣ ହୁଏ । ଆମର ଖାଲି ମୁଠାଏ ଧାନ ।

ଲାଭଜନକ ଫସଲ ଯେ ଖାଲି ବ୍ୟବସାୟ ହିସାବରେ ଆବଶ୍ୟକ, ସେତିକି ନୁହେଁ । ନାନାପ୍ରକାର ଫସଲର ବ୍ୟବସ୍ଥା ଥିଲେ, କୌଣସି ଗୋଟାଏ ଫସଲ ହାନିରେ ଦେଶରେ ହାହାକାର ପଡ଼େ ନାହିଁ । ଓଡ଼ିଶାରେ କିନ୍ତୁ ଯାହା ଚାଷ ଜମି, ସେଥିରୁ ଶତକଡ଼ା ୮୪ ଭାଗ ଜମିରେ ହୁଏ ଧାନ । ଏଇ ଏକମାତ୍ର ଫସଲ ଆମର ସମ୍ବଳ । ସେ ଫସଲ ଉପରେ ବିପତ୍ତି ପଡ଼ିଲେ ଏଣେ ତେଣେ ହାର ହାର ହୋଇ ଚୂଡ଼ା ଗୁଡ଼ିଲ ସଂଗ୍ରହ କରିବା ଛଡ଼ା ଆଉ ଗତ୍ୟନ୍ତର ନାହିଁ । ଏଇ କୃଷି-ବୈଭବ ଘେନି ଏ ହତଭାଗ୍ୟ ଲୋକେ କେତେକାଳ ତାଳ ପକାଇ ଠିଆ ହେବେ ?

ଖାଲି ଏତିକି ନୁହେଁ । ବିଲାତରେ ଜମିରୁ ସେ ଦେଶଲୋକଙ୍କ ପାଇଁ ଉପୁଜେ ଅତି ଅଳ୍ପ ଖାଦ୍ୟ । ମାତ୍ର ସେଠାରେ ବିସ୍ତର କଳକାରଖାନାରୁ ପ୍ରସ୍ତୁତ ହୁଏ ଅପର୍ଯ୍ୟାପ୍ତ ଜିନିଷ । ତା'ର ବିନିମୟରେ ଦେଶରେ ପ୍ରଚୁର ଖାଦ୍ୟ ସବୁବେଳେ ଭରି । ଖାଦ୍ୟ ପାଇଁ ଚିନ୍ତା କରିବାକୁ ହୁଏ ନାହିଁ । ଭାରତବର୍ଷରେ କିନ୍ତୁ କୃଷି ହେଲା ପ୍ରଧାନ ସମ୍ବଳ । ତଥାପି ବମ୍ବେ, ବଙ୍ଗଳା ପ୍ରଭୃତି ପ୍ରଦେଶରେ ଅନେକ କଳ କାରଖାନା, ଅନ୍ୟାନ୍ୟ ପ୍ରଦେଶରେ ମଧ୍ୟ ଅଳ୍ପ ବହୁତ ଶିଳ୍ପ-ସମ୍ପଦ ଅଛି । ମାତ୍ର ଓଡ଼ିଶାର ଏକମାତ୍ର ସମ୍ବଳ

କୃଷି । ଅଧୁନିକ ଶିଳ୍ପ ହିସାବରେ ଅଳ୍ପ କେତେଦିନର ଅନୁଷ୍ଠାନ ଗୋଟିଏ ମାତ୍ର କାଗଜ କାରଖାନା । ଖୋରଧା ଷ୍ଟେସନରେ ରେଲ ବିଭାଗର ମଧ୍ୟ ଗୋଟିଏ କାରଖାନା ଅଛି । ଏହାଛଡ଼ା ଗୋଟିଏ ବୋଲ୍ କାଚ ଆଉ ଦୁଇଟି ଷ୍ଟେଟ ଚିନି କାରଖାନା । ଗଣନା ତ ନାହିଁ—ଜମକାଠି ପରି ଏତିକି ହେଉଛି ଓଡ଼ିଶାର ଶିଳ୍ପ-ଗୌରବ । ଗୃହଶିଳ୍ପ ଗୁଡ଼ିକୁ ଶିଳ୍ପସମ୍ପଦ ମଧ୍ୟରେ ହିସାବ ନ କରିବା ଉଚିତ । ତେଣୁ କଳକାରଖାନାର ଜିନିସ ବଦଳରେ ଖାଦ୍ୟ-ଦ୍ରବ୍ୟ ଆଣି କରିବା ଓଡ଼ିଶା ପକ୍ଷରେ ବିଡ଼ମ୍ବନା । ଭାରତବର୍ଷ ଦରିଦ୍ର ଦେଶ—ମାତ୍ର ସେଥିମଧ୍ୟରେ ଓଡ଼ିଶାର ଅବସ୍ଥା ଏକାବେଳକେ ଶୋଚନୀୟ ।

ଆଉ ପନ୍ଥା ? ଶିଳ୍ପ ସମ୍ପଦ ପାଇଁ ଓଡ଼ିଶାରେ ଯଥେଷ୍ଟ ସମ୍ଭାବନା ଅଛି । ମାତ୍ର ସେ କଥା ଏଠାରେ ଆଲୋଚନା କରାଯାଉନାହିଁ । କୃଷିର ପ୍ରସାର ଲାଗି ମଧ୍ୟ ଓଡ଼ିଶାରେ ପ୍ରଶସ୍ତ କ୍ଷେତ୍ର ଅଛି । ପୂର୍ବେ କୁହାଯାଇଛି, ଏ ପ୍ରଦେଶରେ ୬୧ ଲକ୍ଷ ଏକର ଜମିରେ ଚାଷ ହୁଏ । ମାତ୍ର ବର୍ଷକୁ ବର୍ଷ ପ୍ରାୟ ୧୬ ଲକ୍ଷ ଏକର ଜମି ପଡ଼ିଆ ପଡ଼ି ରହେ । ତା' ଛଡ଼ା ଅଧିକ ୩୩ ଲକ୍ଷ ଏକର ଚାଷର ଉପଯୁକ୍ତ, ଅଥଚ ଅନାବାଦୀ ଭାବରେ ପଡ଼ି ରହିଛି । ଯେତେ ଜମିରେ ଚାଷ ହୁଏ, ତା'ର ଚାରିଭାଗରୁ ତିନି ଭାଗ ଜମି ଏପରି ଅକର୍ମଣ୍ୟ ଭାବରେ ଅଛି ପୁଣି ରହିଛି । ସେ ସବୁ ଜମିରୁ ଫସଲ ଉତ୍ପାଦନ କରିବା ପାଇଁ କୌଣସି ବ୍ୟାପକ ଉଦ୍ୟମ କରାଯାଇନାହିଁ । ସରକାରଙ୍କ ଆଡ଼ୁ ବ୍ୟବସ୍ଥା କରା ନ ଗଲେ ଏ ସବୁ ଅଞ୍ଚଳ ସହଜରେ ଚାଷଜମିରେ ପରିଣତ କରା ଯାଇ ପାରିବ ନାହିଁ— ଅନ୍ତତଃ ନିକଟ ଭବିଷ୍ୟତରେ ହେବାର ଆଶା ନାହିଁ ।

ଓଡ଼ିଶାରେ ୨୬ ଲକ୍ଷ ଏକର ଅର୍ଥାତ୍ ଶତକଡ଼ା ୧୨ ଭାଗ ଭୂମି ବଣ ଜଙ୍ଗଲ । ଜଙ୍ଗଲ ବିଭାଗ ସବୁ ପ୍ରଦେଶରେ ସରକାରଙ୍କର ଗୋଟିଏ ଆୟର ପନ୍ଥା । ମାତ୍ର ଯୁଦ୍ଧ ପର୍ଯ୍ୟନ୍ତ ଓଡ଼ିଶାରେ ଏ ବିଭାଗରେ ଆୟ ଅପେକ୍ଷା ବ୍ୟୟ ଥିଲା ବେଶି । ଯୁଦ୍ଧ ବିଭାଗ ପାଇଁ କାଠ ଯୋଗାଇ ଆୟ ବହୁପରିମାଣରେ ବଢ଼ିଯାଇଛି, ଏ କଥା ବେଶି କାଳ ସ୍ଥାୟୀ ହୋଇପାରିବ ନାହିଁ । ତେବେ ଜଙ୍ଗଲ ବିଭାଗ ରହିଛି ବା କାହିଁକି ? ମାତ୍ର ତଥାପି

ସମସ୍ତ ଜଙ୍ଗଲ କାଟି ସଫା କରି ଗୃଷଜମିରେ ପରିଣତ କରିବା ପାଇଁ କେହି ପରାମର୍ଶ ଦେବେ ନାହିଁ । ପୂର୍ବେ କୁହାଯାଇଛି, ଜଳବାୟୁ ଦୃଷ୍ଟିରୁ କୃଷିର ହିତ ପାଇଁ ଶତକଡ଼ା ୨୦ ଭାଗ ଜମିରେ ଜଙ୍ଗଲ ରହିବା ଆବଶ୍ୟକ । ଅବଶ୍ୟ ଏଥିରୁ ବୁଝିବାକୁ ହେବ ନାହିଁ ଯେ, ପ୍ରତ୍ୟେକ ଗ୍ରାମରେ ବା ପ୍ରତ୍ୟେକ ଏକର ଭୂମିରେ ଶତକଡ଼ା ୨୦ ଭାଗ ଜଙ୍ଗଲ ରହିବା ଆବଶ୍ୟକ । ଗଡ଼ଜାତ ମୁଲକରେ ରହିଛି ପ୍ରଚୁର ବଣ ଜଙ୍ଗଲ । ତେଣୁ ଓଡ଼ିଶାର କେତେକ ସ୍ଥାନରେ ଅକର୍ମଣ୍ୟ ବଣ ଜଙ୍ଗଲ ସଫା କରି ଶସ୍ୟ ଉତ୍ପାଦନର ଉପଯୋଗୀ କରାଯାଇପାରେ । ସେଥିଲାଗି ବିଶାରଦ-ମାନଙ୍କର ନିର୍ଦ୍ଦେଶ ଅନୁସାରେ କାର୍ଯ୍ୟ କରିବା ଉଚିତ । ନ ହେଲେ ରୋଗ ଠାରୁ ଔଷଧର କୁଫଳ ହେବ ଅଧିକ ।

ଏତେ ସବୁ ଗୋଚର, ଅନାବାଦୀ, ବଣଜଙ୍ଗଲ ଅବହେଳା ପରି ପଡ଼ି ରହିଛି—ଶ୍ରୀରାମଙ୍କର ପଦସ୍ପର୍ଶ ଅପେକ୍ଷାରେ । ସେ ପଦସ୍ପର୍ଶ ସବୁଠାରେ ହେବା ଉଚିତନୁହେଁ ଏବଂ ସମ୍ଭବ ମଧ୍ୟ ନୁହେଁ । ମାତ୍ର ଅନେକ ସ୍ଥାନରେ ନିଶ୍ଚୟ ସମ୍ଭବ । ସରକାରଙ୍କୁ ସେଇ ଶ୍ରୀରାମଙ୍କର ସ୍ଥାନ ପୂରଣ କରିବାକୁ ହେବ । ବ୍ୟକ୍ତିଗତ ସ୍ୱାର୍ଥ ଏବଂ ଉଦ୍ୟମ ଉପରେ ଏସବୁ ଛାଡ଼ି ଦିଆ ଯାଇ ନ ପାରେ । ନିର୍ଦ୍ଦିଷ୍ଟ ଯୋଜନା ସରକାରଙ୍କ ଆଡ଼ୁ କରିବାକୁ ହିଁ ହେବ ।

ପଞ୍ଜାବ ସିନ୍ଧୁ ପ୍ରଦେଶରେ ବିରାଟ କେନାଲ ନମିଣ କରାଗଲା । ବିସ୍ତର ଜମି ଶସ୍ୟ ଉତ୍ପାଦନର ଉପଯୋଗୀ ହୋଇ ଉଠିଲା । ସେତେବେଳେ ସରକାର ସବୁଠାରେ ନିର୍ଦ୍ଦିଷ୍ଟଭାବରେ ମୌଜାମାନଙ୍କର ସୀମା ନିରୂପଣ କରିଦେଲେ । ଗ୍ରାମର ସୀମା, ରାସ୍ତା ଘାଟ, ପାଣିଯିବାର ବାଟ ସମସ୍ତ ଠିକ କରିଦିଆଗଲା । ବସ୍ତିଗୁଡ଼ିକ ସ୍ୱାସ୍ଥ୍ୟକର କରିବାର ବନ୍ଦୋବସ୍ତ କରିଦିଆ ଗଲା । ଲୋକେ ଆସି ଖାଲି ଘର ତିଆରି କରି ସଙ୍ଗେ ସଙ୍ଗେ କୃଷିକାର୍ଯ୍ୟ ଆରମ୍ଭ କରିଦେଲେ । ଓଡ଼ିଶାର ଗଞ୍ଜାମ ଏବଂ କୋରାପୁଟ ମାଳ ଅଞ୍ଚଳରେ ଅସ୍ୱାସ୍ଥ୍ୟକର ବୋଲି କୌଣସି ସରକାରୀ ଜମିର ବ୍ୟବସ୍ଥା ନ ଥାଇ ଯେଉଁ ବିସ୍ତର ଭୂମି ପଡ଼ି ରହିଛି, ସେଠାରେ ପଞ୍ଜାବର ଏଇ ପନ୍ଥା ଅନୁସରଣ କରିବା ଉଚିତ ।

---

## ଏ ଦେଶ ଭୂଇଁରେ ପର୍ ସୁନା ଫଳେ ?

ପ୍ରବାଦ ଅଛି ଭାରତ ସ୍ୱର୍ଣ୍ଣପ୍ରସୂ । ଶିଳ୍ପ-ବିଭବ ଧନ-ସମ୍ପଦ ପାଇଁ ଏକ ସମୟରେ ଭାରତବର୍ଷର ଖ୍ୟାତି ଥିଲା ଦୂର ବିଦେଶରେ ମଧ୍ୟ । କେତେ ବିଦେଶୀ ବଣିକ ବ୍ୟବସାୟୀ ଏଥିରେ ଆକୃଷ୍ଟ ହୋଇ ଏ ଦେଶକୁ ଆସିଥିଲେ । କ୍ରମେ କିନ୍ତୁ ତା'ର ଶିଳ୍ପ-ଗୌରବ ମଉଳି ଆସିଲା । ଆଧୁନିକ କଳକାରଖାନାର ପ୍ରତିଯୋଗିତାରେ ସେ ଆଉ ତିଷ୍ଠି ପାରିଲା ନାହିଁ ; ଶେଷକୁ କୃଷି ମାତ୍ର ହେଲା ଏ ଦେଶର ସମ୍ବଳ । ୧୮୪୦ ମସିହାରେ ପାର୍ଲିମେଣ୍ଟର ଏକ କମିଟି ଭାରତ ବିଷୟରେ ତଦନ୍ତ କରୁଥିଲେ । ଜଣେ ସଭ୍ୟ କହିଲେ ଭାରତବର୍ଷ କୃଷିପ୍ରଧାନ ଦେଶ । ମାର୍ଟିନ ସାହେବ ଏ କମିଟି ଆଗରେ ସାକ୍ଷ ଦେଉଥିଲେ । ସେ ଏପରି ମତର ପ୍ରତିବାଦ କଲେ । ସେ କହିଲେ ଭାରତକୁ କୃଷିପ୍ରଧାନ କହିବା ଅର୍ଥ ଅଜ୍ଞତା । ଭାରତରେ କୃଷି-ବିଭବ ଯେପରି, ଶିଳ୍ପ-ବିଭବ ମଧ୍ୟ ସେହିପରି । ମାତ୍ର କମ୍ପାନିର ରାଜତ୍ୱ ଶେଷ ହେଲା ବେଳକୁ ଭାରତର ଶିଳ୍ପ-ସମ୍ପଦ ଏକା-ବେଳେକେ ଲୋପ ପାଇଥିଲା । କୃଷି ବ୍ୟତୀତ ଆଉ ନ ଥିଲା ଅନ୍ୟ ସମ୍ବଳ । ଏବେ ଯଦି କେହି କହେ, ଭାରତ କୃଷିପ୍ରଧାନ ଦେଶ, ତେବେ ମଧ୍ୟ ଏ ମନ୍ତବ୍ୟକୁ ଅସଙ୍ଗତ ବୋଲି ବୁଝିବାକୁ ହେବ । କାରଣ, ଭାରତବର୍ଷ

ଶିଳ୍ପପ୍ରଧାନ ନୁହେଁ କି କୃଷିପ୍ରଧାନ ମଧ୍ୟ ନୁହେଁ । ୧୯୨୮ ମସିହାରେ ଆମର ରାଜକୀୟ କୃଷି କମିଶନ ନିଯୁକ୍ତ ହୋଇଥିଲା, ଭାରତବର୍ଷରେ କୃଷି ସମ୍ବନ୍ଧରେ ତଦନ୍ତ କରିବା ପାଇଁ । ସଭାପତି ଥିଲେ ଲର୍ଡ଼ ଲିନ୍‌ଲିଥ୍‌ଗୋ, ଏ କମିସନ୍ ମନ୍ତବ୍ୟ ଦେଲେ—କୃଷି ଏ ଦେଶ ଲୋକଙ୍କର ଖୁବବେଶୀ ଗୋଟାଏ ପ୍ରକାର ଜୀବନ ଯାପନ ରୀତି । ପ୍ରକୃତ ପକ୍ଷରେ ଏହା ପେଷା ବା ବ୍ୟବସାୟ ନୁହେଁ । ଏଥିରେ ଲାଭକ୍ଷତିର କୌଣସି ନିର୍ଦ୍ଦିଷ୍ଟ ହିସାବ ନାହିଁ । କୃଷକ ଦିନ ଦିନ ଧରି କାମ କରେ; ତା'ର ପରିବାରର ଅନ୍ୟ ସମସ୍ତେ ସହ-ଯୋଗ କରନ୍ତି । ମାତ୍ର ତା'ର ନିଜର ବା ପରିବାରର ଅନ୍ୟମାନଙ୍କର ପରିଶ୍ରମ ପାଇଁ ଯାହା ମଜୁରି, ସେ କଥା ସେ ହିସାବ କରେ ନାହିଁ । ଦିନକୁ ଦିନ ତା'ର ଋଣର ବୋଝ ଯେ ବଢ଼ି ଚାଲିଛି, ସେଥିପ୍ରତି ମଧ୍ୟ ଦୃଷ୍ଟି ଦିଏ ନାହିଁ । ଚାଷ ଚାଲିଛି ସେଇ ମାନ୍ଧାତା ଅମଳର ମାମୁଲି ଢଙ୍ଗରେ । ବୁଦ୍ଧି, ବିଦ୍ୟା, ବିଜ୍ଞାନ ଏ ଦେଶର କୃଷି ସଂସ୍ପର୍ଶରେ ଆଦୌ ଆସିନାହିଁ । ପିଲା ପାଠ ନ ପଢ଼ିଲେ ପିତା ମାତା ଭର୍ତ୍ସନା କରି କହନ୍ତି "ପାଠ ନ ପଢ଼ିଲେ ହଳ କରିବୁ ।" ଭୂମିକର୍ଷଣ ମନୁଷ୍ୟର ଯେପରି ଅଯୋଗ୍ୟତାର ଦଣ୍ଡ । କୃଷି ବିଷୟରେ ଏପରି ଆମର ମନୋଭାବ । ଏଥିରେ 'ଲକ୍ଷ୍ମୀଙ୍କର ବସତି' ତ ଦୂରର କଥା, ପେଟ ପୁରାଇ ମୁଠାଏ ଖାଇବାକୁ ମିଳିବା ମଧ୍ୟ ସମ୍ଭବ ହେଉ ନାହିଁ ।

ଭାରତବର୍ଷ ଏକ ବିରାଟ ଦେଶ । ପରିମାଣ ହିସାବରେ ପୃଥିବୀର ଅନ୍ୟ ଯେ କୌଣସି ଦେଶଠାରୁ ଧାନ ଏବଂ ଆଖୁ ହୁଏ ଏ ଦେଶରେ ବେଶୀ । ଗହମ ଉତ୍ପାଦନରେ ଭାରତବର୍ଷର ତୃତୀୟ ସ୍ଥାନ । ଖାଦ୍ୟ ଶସ୍ୟ କଥା ବାଦ୍ ଦେଲେ ଝୋଟ ଭାରତବର୍ଷର ଏକଚାଟିଆ ସମ୍ପଦ । କପା ଚାଷରେ ଏହାର ସ୍ଥାନ ଦ୍ୱିତୀୟ—ଖାଲି ଆମେରିକା ତଳକୁ । ଏତେ ବିରାଟ, ବସ୍ତୁତ ଦେଶପକ୍ଷରେ ଏଥିରେ ବିସ୍ମିତ ହେବାର କିଛି ନାହିଁ । ମାତ୍ର ଏକର ପିଛା ଆମର ଯାହା ଆମଦାନୀ ହୁଏ, ହିସାବରେ ଦେଶ ବିଦେଶ ସଙ୍ଗେ ତୁଳନା କରି ଦେଖିଲେ, ଭାରତର ପ୍ରକୃତ ଅବସ୍ଥା ସହଜରେ ବୁଝାଯାଏ ।

ଧାନ ଭାରତବର୍ଷର ପ୍ରଧାନ ଫସଲ । ଏଇ ଫସଲ ଉପରେ ଲୋକଙ୍କର ସୁଖ ସମ୍ପଦ ବହୁ ପରିମାଣରେ ନିର୍ଭର କରେ । ମାତ୍ର ଏ ଫସଲର ଅବସ୍ଥା କଣ ? ଦେଶ ବିଦେଶରେ ଏକର ପିଛା ଯାହା ହାରାହାରି ଗୃହ୍ଣଳ ମିଳେ, ତାର ହିସାବ ତଳେ ଦିଆଗଲା ।

| ଦେଶ | ଏକର ପିଛା ହାରାହାରି ଗୃହ୍ଣଳର ପରିମାଣ |
|---|---|
| ଆମେରିକା ( ଯୁକ୍ତରାଜ୍ୟ ) | ୧୮ ମହଣ |
| ଜାପାନ | ୨୮ „ |
| ମିସର | ୨୫ „ |
| ଇଟାଲି | ୩୨ „ |
| ଚିନ ଦେଶ | ୧୭ „ |
| ଭାରତବର୍ଷ | ୯ „ |

ଏ ହିସାବ ପ୍ରତି ଦୃଷ୍ଟି ଦେଲେ ପ୍ରତ୍ୟେକ ଭାରତବାସୀର ଖାଲି ଯେ ଖୋଲ୍ ଉପୁଜିବ ତା' ନୁହେଁ, ଅପମାନରେ ମଧ୍ୟ ମୁଣ୍ଡ ନଇଁ ପଡ଼ିବ । ଅନ୍ୟ ଦେଶ ସଙ୍ଗେ ସମକକ୍ଷ ହେବା ତ ଦୂରର କଥା, ଭାରତର ସ୍ଥାନ କାହିଁ କେତେ ଦୂରରେ, କେତେ ତଳେ । ଏଇ ହେଲା ଆମ ଭୂଇଁର ସୁନା ଫଳ । ଏହାର କାରଣ ଅଜା ବାହାର କରିବା ଆବଶ୍ୟକ । ଏ ଦେଶର କୃଷି ସମ୍ପୂର୍ଣ୍ଣ ନିର୍ଭର କରେ ପ୍ରକୃତିର ମରଜି ଉପରେ । ଅଧିକାଂଶ ବନ୍ଧନଠାରୁ ଏ ଦେଶର ଭୂଇଁ କୌଣସି ସହାୟତା ପାଇ ନାହିଁ । କୃଷିର ଉତ୍କର୍ଷ ଲାଗି ଯେ ମାନବର ବୁଦ୍ଧି, ବଳ, ଶକ୍ତି, ସାମର୍ଥ୍ୟ ଆବଶ୍ୟକ ଏ କଥା ଆମ ଲୋକେ କ୍ୱଚିତ୍ ଉପଲବ୍ଧି କରନ୍ତି । ପ୍ରକୃତିର ଦାନକୁ ଉପଯୁକ୍ତ ଭାବରେ ବ୍ୟବହାର କରି ନ ଜାଣିଲେ ଅଗାଧ ପ୍ରାକୃତିକ ସମ୍ପଦ ଭିତରେ ଦାରିଦ୍ର୍ୟ-ରାକ୍ଷସ ସବୁବେଳେ ମୁଣ୍ଡ ଟେକି ଠିଆ ହୋଇଥିବ ।

ଏତ ହେଲା ଭାରତବର୍ଷର ମୋଟାମୋଟି ଅବସ୍ଥା । ଏଥି ସଙ୍ଗେ ଓଡ଼ିଶା ପ୍ରତି ଟିକିଏ ଦୃଷ୍ଟି ଦିଆଯାଉ । ପୃଥିବୀର ଅନ୍ୟାନ୍ୟ ଦେଶ

ତୁଳନାରେ ଭାରତର ଅବସ୍ଥା ଏତେ ହୀନ । ପୁଣି ଭାରତବର୍ଷ ମଧ୍ୟରେ ଓଡ଼ିଶାର ଅବସ୍ଥା ଅତି ଶୋଚନୀୟ । ମାନ୍ଦ୍ରାଜ, ବଙ୍ଗଳା, ଆସାମ, ବମ୍ବେ ପ୍ରଦେଶମାନଙ୍କରେ ଓଡ଼ିଶା ପରି ଧାନ ପ୍ରଧାନ ଫସଲ । ସେଇ ପ୍ରଦେଶ ସଙ୍ଗେ ଆମର ଅବସ୍ଥା ତୁଳନା କରି ଦେଖିବାର କଥା ।

| ପ୍ରଦେଶ | ଏକର ପିଛା ହାରାହାରି ଗୃହଳର ପରିମାଣ |
|---|---|
| ମାନ୍ଦ୍ରାଜ | ୧୨ ୪ ମହଣ |
| ବଙ୍ଗଳା | ୧୧ ,, |
| ଆସାମ | ୯ ,, |
| ବମ୍ବେ | ୧୦ ,, |
| ଓଡ଼ିଶା | ୭ ୪ ,, |

ଅବଶ୍ୟ ଫସଲ ପ୍ରତିବର୍ଷ ସମାନ ଭାବରେ ହୁଏ ନାହିଁ । ବର୍ଷା, ବଢ଼ି, ମରୁଡ଼ି ପକ୍ଷରେ ମଝିରେ ସେମାନଙ୍କର କରାମତି ଦେଖାନ୍ତି । ମାତ୍ର ଉପରେ ଯେଉଁ ହିସାବ ଦିଆ ଯାଇଛି, ତା' କୌଣସି ଗୋଟିଏ ବର୍ଷର ନୁହେଁ, ପାଞ୍ଚବର୍ଷର ହାରାହାରି ହିସାବ । ଯେଉଁ ବର୍ଷ ଓଡ଼ିଶାରେ ଖୁବ ଭଲ ଫସଲ ହୁଏ, ସେ ବର୍ଷ ଆଦାୟ ହୁଏ ଏକରକରୁ ୮୪ ମହଣ ମାତ୍ର ଗୃହଳ । ଏହାଠାରୁ ବଳି ଆଉ ଅଧିକ ଦୁର୍ଦ୍ଦଶା କଣ ହୋଇପାରେ ? ପ୍ରକୃତି ଓଡ଼ିଶାର ବିମାତା ନୁହେଁ—ଅବଶ୍ୟ 'ଝଡ଼ ବଢ଼ି ବାତ୍ୟା'ଙ୍କର ଏ ପ୍ରଦେଶ ପ୍ରତି ଦୃଷ୍ଟି ପଡ଼େ ବେଶି । ତଥାପି ଭଲ ଫସଲର ପରିମାଣ ଯେବେ ଏହିପରି, ଆଉ ଆଶା ଆଶ୍ୱାସନା କେଉଁଠାରେ ?

ଝୋଉରକଥା, ଭାରତବର୍ଷର କୃଷକ ସମ୍ପ୍ରଦାୟ କୃଷିର ଉନ୍ନତିଲାଗି ବିଶେଷ ତତ୍ପର ଥିଲା ପରି ବୋଧ ହୁଏ ନାହିଁ । ଅବଶ୍ୟ ସ୍ଥାନ ବିଶେଷରେ ଅବସ୍ଥା ସ୍ୱତନ୍ତ୍ର । ଏ ଦିଗରେ ସରକାରଙ୍କର ଯେ ଗୁରୁ ଦାୟିତ୍ୱ ଅଛି, ଏଥିରେ ସନ୍ଦେହ ନାହିଁ । ସରକାର ଏଥିଲାଗି ଯାହା ବ୍ୟବସ୍ଥା କରିଛନ୍ତି ବା କରିବା ଉଚିତ, ତା'ର ଆଲୋଚନା ଯଥା ସ୍ଥାନରେ କରାଯିବ । ମାତ୍ର

କୃଷକର ଯଦି ଜୀବନ-ନିର୍ବାହ-ପ୍ରଣାଳୀ ଉନ୍ନତ କରିବାଲାଗି ଅଦମ୍ୟ ପ୍ରବୃତ୍ତି ନ ହୁଏ, ବାଞ୍ଛନୀୟ ସହାୟତା ପାଇବା ଲାଗି ପ୍ରବଳଇଚ୍ଛା ବା ଆଗ୍ରହ ନ ହୁଏ, କୃଷି ପ୍ରତି ସମାଜର ମନୋଭାବ ପରିବର୍ତ୍ତନ ନ ହୁଏ, ତେବେ କୃଷିର ଉନ୍ନତି ଏକାବେଳେକେ ଅସମ୍ଭବ । ଗାନ୍ଧୀଜୀ କୃଷି କମିସନ୍ ଠିକ ଏହିପରି ମନ୍ତବ୍ୟ ବ୍ୟକ୍ତ କରିଥିଲେ । ଏକଥା ନିଶ୍ଚିତ ସତ୍ୟ । ଖାଲି କର୍ମର ଦୁହାଇ ଦେଇ ନିଶ୍ଚିନ୍ତ ହେଲେ ଉନ୍ନତି ଅସମ୍ଭବ । ଭୂଇଁରେ ସୁନା ଆପେ ଆପେ ଫଳିବ ନାହିଁ—ଫଳାଇ ପାରିଲେ ଫଳିବ ।

---

# ଅଭାବ କେତେ ?

ଆମ ଦେଶରେ ସର୍ବମୋଟ ଯାହା ଖାଦ୍ୟଶସ୍ୟ ଉତ୍ପନ୍ନ ହୁଏ, ସମସ୍ତ ଦେଶବାସୀଙ୍କ ଲାଗି ସେତକ ଯଥେଷ୍ଟ କି ନା ? ଧନୀ ଦରିଦ୍ର, ସେଠ ସୌଦାଗର ବା ନିରନ୍ନ ଭିକ୍ଷୁକ ପ୍ରଭୃତିଙ୍କର ଅବସ୍ଥା-ଭେଦ ଏଠାରେ ବିଚାର କରାଯାଉ ନାହିଁ । ସୁସ୍ଥ, ସବଳ, କାର୍ଯ୍ୟକ୍ଷମ ରହିବା ପାଇଁ ଲୋକଙ୍କର ଯେତିକି ଖାଦ୍ୟ ଲୋଡ଼ା, ସେତିକି ହିସାବରେ ବାଣ୍ଟି ଦେଲେ ଭାରତର ଶସ୍ୟ ସମ୍ପଦ କାହାରି ପାଇଁ ଅନାଟନ ହେବ ନାହିଁ ତ ? ଚାଉଳ ଏବଂ ଗହମ ଆମର ପ୍ରଧାନ ଖାଦ୍ୟ । ମକା, ବୁଟ, ଯଅ, ବାଜରା ଏବଂ ମାଣ୍ଡିଆ ମଧ୍ୟ ଏଇ ଶ୍ରେଣୀର ଅନ୍ତର୍ଗତ । ବହୁଲୋକ ଚାଉଳ, ଗହମ ପରିବର୍ତ୍ତିରେ ଏଇ ସବୁ ଖାଦ୍ୟ ଅନେକ ସମୟରେ ଖାନ୍ତି ଏବଂ ଚାଉଳ ଓ ଗହମ ତୁଳନାରେ ଏସବୁ ଦ୍ରବ୍ୟର ଉପାଦେୟତା ଖାଦ୍ୟ ହିସାବରେ ହୀନ ବୋଲି କୁହାଯାଇ ନ ପାରେ ।

ଭାରତବର୍ଷରେ ସର୍ବମୋଟ କେତେ ଖାଦ୍ୟଦ୍ରବ୍ୟ ଉତ୍ପନ୍ନ ହୁଏ, ସେ ବିଷୟରେ ନିର୍ଦ୍ଦିଷ୍ଟ ଠିକଣାଠିକ ହିସାବ ମିଳିବା ସମ୍ଭବ ନୁହେଁ । ଆମ ଦେଶରେ ସାଢ଼େ ଛ'ଲକ୍ଷ ଗ୍ରାମ । ଏତେ ଅଞ୍ଚଳରୁ ନିର୍ଦ୍ଦିଷ୍ଟ ହିସାବ ମିଳିବା ସହଜ ନୁହେଁ । ତଥାପି ଏ ସବୁ ସ୍ଥାନରୁ ହିସାବ ପାଇବା ଲାଗି ଉଦ୍ୟମ

କରାଯାଇଛି । କେଉଁ ଗ୍ରାମରେ କେତେ ଜମିରେ ଫସଲ କରାଗଲା, ଏକର ପିଛା ହାରାହାରି କେତେ ଫସଲ ହେଲା, ଏଇ ହିସାବ ଧରି ଭାରତର ମୋଟ ଖାଦ୍ୟଶସ୍ୟ ବିଷୟରେ ଖବର ସଂଗ୍ରହ କରାଯାଇଛି । ସବୁ ସ୍ଥାନରେ ସବୁବେଳେ ସଠିକ ଖବର ମିଳିବା ସମ୍ଭବ ହୁଏ ନାହିଁ । ପୁଣି ଦେଶୀୟ ରାଜ୍ୟମାନଙ୍କରୁ ଏ ସବୁ ଖବର ମିଳିବା ଅଧିକ କଷ୍ଟକର । ମାତ୍ର ମୋଟାମୋଟି ଯାହା ହିସାବ ଧରାଯାଇଛି, ସେ ସବୁ ଏକାବେଳକେ ନିର୍ଭୁଲ ନ ହେଲେ ମଧ୍ୟ, ତହିଁରୁ ଅବସ୍ଥା ସମ୍ବନ୍ଧରେ ନିର୍ଦ୍ଦିଷ୍ଟ ଧାରଣା କରାଯାଇପାରିବ ।

୧୯୩୬ ଠାରୁ ୧୯୪୩ ମସିହା ପର୍ଯ୍ୟନ୍ତ ଆଠ ବର୍ଷର ହିସାବ ଦେଖିଲେ ଜଣାଯାଏ, ଆମ ଦେଶରେ ଚାଉଳ ଗହମ, ମକା, ପ୍ରଭୃତି ଖାଦ୍ୟଶସ୍ୟ ବାର୍ଷିକ ଉତ୍ପନ୍ନ ହୁଏ ହାରାହାରି ୧୪୯ କୋଟି ମହଣ । ଅବଶ୍ୟ କେଉଁବର୍ଷ ହୁଏ ଅଳ୍ପ, କେଉଁ ବର୍ଷ ବା ବେଶି । ମାତ୍ର ଏ ହେଲା ଆଠବର୍ଷର ହାରାହାରି ହିସାବ । ଏ ସମସ୍ତ କିନ୍ତୁ ଲୋକଙ୍କର ଖାଦ୍ୟ ହିସାବରେ ବ୍ୟବହାର କରାଯାଇ ନ ପାରେ । ଏଥି ମଧ୍ୟରୁ ଆସନ୍ତା ବର୍ଷ ପାଇଁ ବିହନ ବାନ୍ଧିବାକୁ ହେବ । ସବୁ ଖାଇ ଶେଷ କଲେ ଚଳିବ କିପରି ? ପୁଣି କେତେ ଖାଦ୍ୟ କେତେ ଆଡ଼େ ନଷ୍ଟ ମଧ୍ୟ ହୁଏ । ଭାରତସରକାରଙ୍କ ଖାଦ୍ୟ-ବିଭାଗ ହିସାବ କରିଛନ୍ତି ଯେ ପ୍ରତିବର୍ଷ ୮୬ କୋଟି ମହଣ ଖାଦ୍ୟ ନାନା ଭାବରେ ନଷ୍ଟ ହୁଏ, ପୋକ ମୂଷା ଖାଇଯାନ୍ତି । ଏତିକି ଖାଦ୍ୟରେ ସାରା ଭାରତର ସବୁଲୋକଙ୍କର ୧୬ ଦିନ ଚଳିପାରନ୍ତା । କଣ କଲେ, କି ଉପାୟ ଅବଲମ୍ବନ କଲେ ଏତେ ଖାଦ୍ୟ ଅକାରଣରେ ନଷ୍ଟ ହେବ ନାହିଁ, ସେ କଥା ବିଚାର କରିବାର କଥା । ମାତ୍ର ଏଠାରେ କହିବାର କଥା ଯେ, ବିହନ ହିସାବରେ ଏବଂ ସାଧାରଣତଃ ଯାହା ନଷ୍ଟ ହୁଏ ସେ ହିସାବ ଦେଖିଲେ ଶତକଡ଼ା ୧୨୨ ଭାଗ ଖାଦ୍ୟଶସ୍ୟ ବାଦ୍ ଦେବା ଉଚିତ ବୋଲି ବିଶେଷଜ୍ଞମାନଙ୍କର ମତ । ତା' ହେଲେ ଲୋକଙ୍କର ଖାଇବାଲାଗି ଆଉ ରହିଲା ୧୩୧ କୋଟି ମହଣ ।

ଭାରତବର୍ଷର ଲୋକସଂଖ୍ୟା ୩୯ କୋଟି, ୧୯୫୧ ସେନସସ୍ ଅନୁସାରେ । ଏଇ କେତେ ବର୍ଷ ଭିତରେ ଅନ୍ତତଃ ୪୦ କୋଟିରୁ ଅଧିକ ହୋଇଥିବ । ଏ ଦେଶରେ ୧୦ ବର୍ଷରୁ ଅଳ୍ପ ବୟସର ପିଲା ଲୋକସଂଖ୍ୟାର ଶତକଡ଼ା ୨୮ । ସରସ ପୁଷ୍ଟିକର ଶିଶୁଖାଦ୍ୟ ଏ ଦେଶରେ ସାଧାରଣ ଶିଶୁ ପାଇବେ କାହୁଁ ? ସେ ସୁଯୋଗ ଅଳ୍ପ କେତେକ ଭାଗ୍ୟବାନ ଶିଶୁଙ୍କର ଭାଗ୍ୟରେ ଜୁଟେ । ତେଣୁ ସାଧାରଣ ଶିଶୁ ମଧ୍ୟ ସେଇ ଚାଉଳ ଗହମରେ ଅଂଶୀଦାର ହୁଏ । ହାରାହାରି ହିସାବରେ ଜଣେ ପୂର୍ଣ୍ଣବୟସ୍କ ଲୋକର ଯାହା ଖାଦ୍ୟ ଆବଶ୍ୟକ, ଦଶବର୍ଷରୁ ଅଳ୍ପ ବୟସର ଦୁଇଜଣ ପିଲାଙ୍କର ସେତିକି ଆବଶ୍ୟକ ବୋଲି ଧରାଯାଇପାରେ । ସେହି ହିସାବରେ ବିଚାର କରି ଦେଖିଲେ ଏ ଦେଶରେ ଉତ୍ପନ୍ନ ଖାଦ୍ୟ ପ୍ରାୟ ୩୪୨ କୋଟି ପୂର୍ଣ୍ଣ-ବୟସ୍କ ଲୋକଙ୍କ ଲାଗି ଯଥେଷ୍ଟ ହେବା ପ୍ରୟୋଜନ ।

ପୂର୍ବେ କୁହାଯାଇଛି, କୁନୁର ଗବେଷଣା କେନ୍ଦ୍ରର ବିଶେଷଜ୍ଞମାନଙ୍କ ମତରେ ପରିପୁଷ୍ଟ କାର୍ଯ୍ୟକ୍ଷମ ଜୀବନ ଧାରଣପାଇଁ ଜଣେ ସାଧାରଣ ଲୋକର ପ୍ରତିଦିନ ସାଢ଼େ ସାତ ଛଟାଙ୍କି ଚାଉଳ-ଗହମ ଖାଇବା ଆବଶ୍ୟକ । ସେଥି ସଙ୍ଗେ ପୁଣି ଦୁଧ ଘିଅ, ମାଛ ମାଂସ, ଶାକସବଜି ଉପଯୁକ୍ତ ପରିମାଣରେ ଲୋଡ଼ା । ଏସବୁ ଆମ ଲୋକମାନଙ୍କୁ ମିଳେ ଅତି ଅଳ୍ପ । ତେଣୁ ଚାଉଳ ଗହମର ପରିମାଣ ଅଧିକ ହେବା ସ୍ୱାଭାବିକ । ତଥାପି ସେଇ ସାଢ଼େ ସାତ ଛଟାଙ୍କି ହିସାବରେ ବିଚାର କରି ଦେଖିଲେ ଏ ଦେଶ ଲୋକଙ୍କୁ ଖାଦ୍ୟ ଯୋଗାଇବା ପାଇଁ ବାର୍ଷିକ ୧୪୮ କୋଟି ମହଣ ଖାଦ୍ୟଶସ୍ୟ ଆବଶ୍ୟକ । ଯୋଗାଣ ପ୍ରତି ଦୃଷ୍ଟିଦେଲେ ସହଜରେ ବୁଝାଯିବ ଯେ, ଆମର ବର୍ଷକୁ ୧୨ କୋଟି ମହଣ ଖାଦ୍ୟର ଅଭାବ । ପ୍ରତ୍ୟେକ ଲୋକକୁ ଯେବେ ଉପଯୁକ୍ତ ପରିମାଣରେ ଖାଦ୍ୟ ଯୋଗାଇବାର ବନ୍ଦୋବସ୍ତ କରାଯାଏ, କେହି ଯଦି 'ଦରିପୁରି' ଟିକା ନ ଯାନ୍ତି, ତେବେ ପ୍ରତି ଶହେ ଜଣଙ୍କ ମଧ୍ୟରୁ ପ୍ରାୟ ୧୦ ବା ୧୧ ଜଣଙ୍କୁ ବରାବର ଉପବାସ ରହିବାକୁ ହେବ । କେହି କେହି ପୁଣି ମଧ୍ୟ ଦଅନ୍ତି, ସାଢ଼େ ସାତ ଛଟାଙ୍କି ଦିନକର ଖାଦ୍ୟପାଇଁ ଯଥେଷ୍ଟ

ନୁହେଁ । ଦୈନିକ ଖାଦ୍ୟ ୧୦ ଛଟାଙ୍କି ହେବା ଉଚିତ । ସେହି ହିସାବରେ ଅଳ୍ପର ଅଧିକ ଲୋକଙ୍କୁ ଅଣଜାବନ ଉପବାସ-ବ୍ରତ ଗ୍ରହଣ କରିବାକୁ ହେବ ।

ସେତିକି ନୁହେଁ, ଅଧିକ ପରିତାପର ବିଷୟ—ଏ ଅଭାବ ଅନାଟନ ଦିନୁଁ ଦିନ ବଢୁଛି । ୧୯୩୧ ଠାରୁ ୧୯୪୧ ମସିହା ମଧ୍ୟରେ ଭାରତର ଲୋକସଂଖ୍ୟା ୩୪ କୋଟିରୁ ବଢ଼ି ବଢ଼ି ହେଲା ୩୯ କୋଟି । ଦଶବର୍ଷ ଭିତରେ ଲୋକସଂଖ୍ୟା ବଢ଼ିଲା ଶତକଡ଼ା ୧୫ ଭାଗ । ମାତ୍ର ଏଇ ଦଶବର୍ଷ ଭିତରେ ଖାଦ୍ୟଶସ୍ୟର ପରିମାଣ ବଢ଼ିବା ତ ଦୂରର କଥା, ଶତକଡ଼ା ୪ ଭାଗ କମିଯାଇଛି । ଅବସ୍ଥା ଅତି ଜଟିଳ, ଉଦ୍‌ବେଗମୟ ।

ପୁଣି କେବଳ ଚାଉଳ, ଗହମ ଇତ୍ୟାଦି ଖାଦ୍ୟ-ଶସ୍ୟ ପ୍ରତି ଦୃଷ୍ଟି ଦେଲେ ଖାଦ୍ୟ ପରିସ୍ଥିତିର ଉପଯୁକ୍ତ ଆଲୋଚନା ହେଲା ନାହିଁ । ଆଗେ କୁହାଯାଇଛି, ଉପଯୁକ୍ତ ଖାଦ୍ୟ ଲାଗି ଡାଲି, ଦୁଧ, ଶାଗ, ପରିବା ଆବଶ୍ୟକ । ମାଛ, ମାଂସ, ତେଲ, ଚିନି ମଧ୍ୟ ପ୍ରୟୋଜନ । କୁନୁର ଗବେଷଣା ହିସାବରେ ଏସବୁ ଜିନିଷ ଯେ ପରିମାଣରେ ଆବଶ୍ୟକ, ସେ ଅନୁପାତରେ ଯୋଗାଣର ପରିମାଣ ଅଳ୍ପ । ଉଦାହରଣ ସ୍ୱରୂପ ଦୈନିକ ଜଣ ପିଛା ୧୨ ଛଟାଙ୍କି ଡାଲି ଆବଶ୍ୟକ ହେଲେ ସମଗ୍ର ଭାରତବର୍ଷ ପାଇଁ ୩୦ କୋଟି ମହଣ ଡାଲି ପ୍ରୟୋଜନ । ମାତ୍ର ଆମ ଦେଶରେ ଉତ୍ପନ୍ନ ହୁଏ ବର୍ଷକୁ ୨୦ କୋଟି ମହଣ । ମାଛ ମାଂସ, ଶାଗ ପରିବା ସକଳ ବିଷୟରେ ଅବସ୍ଥା ଠିକ୍ ଏହିପରି । ପ୍ରତିଦିନ ଫଳ ଖାଇବା ଏ ଦେଶରେ ବିଳାସ । ଅନ୍ତତଃ ନିମୋନିଆ, ଟାଇଫଏଡ୍ ନ ହେଲେ ଫଳ କିଣିବା କଥା ପ୍ରାୟ ଉଠେ ନାହିଁ ।

ଦୁଧ, ଘିଅ, ଦହି ଖାଦ୍ୟର ବିଶିଷ୍ଟ ଅଙ୍ଗ । ମାତ୍ର କେତେଜଣ ଏ ଦେଶରେ ଦୁଧ ଖାଇବାକୁ ପା'ନ୍ତି ? ଶିଶୁ ବା ରୋଗୀପାଇଁ ମଧ୍ୟ ସବୁଠାରେ ଦୁଧ ମିଳିବା ସମ୍ଭବ ହେଉନାହିଁ । ଆଉ ସୁସ୍ଥ ଲୋକର କଥା

ପରୁରି କି ଲାଭ ? ୧୯୪୩ ମସିହାରେ ମିଳିତ ଜାତିମାନଙ୍କର ଏକ ସମ୍ମିଳନୀ ବସିଥିଲା ଆମେରିକାରେ । ପୁଷ୍ଟିକର ଖାଦ୍ୟ ସମ୍ବନ୍ଧରେ ଆଲୋଚନା ହୋଇଲା । ସମ୍ମିଳନୀ ସୁପାରିଶ କଲେ ଯେ, ପ୍ରତ୍ୟେକ ଲୋକର ଦୈନିକ ୧୦ ଛଟାଙ୍କି ଦୁଧ ଖାଇବା ଆବଶ୍ୟକ । ବିଲାତ, ଆମେରିକା, ଅଷ୍ଟ୍ରେଲିଆ, କାନେଡ଼ା, ନିଉଜିଲାଣ୍ଡ ପ୍ରଭୃତି ଦେଶରେ ଜଣପିଛା ଅଧିକ ଅଧିକ ଦୁଧ ଖାଇବାକୁ ମିଳେ । ଅଷ୍ଟ୍ରେଲିଆରେ ହାରାହାରି ଜଣକର ଭାଗ ପଡ଼େ ଦିନକୁ ସେ ୧।୵, କାନେଡ଼ାରେ ସେ ୧୳୵, ବିଲାତରେ ସେ ୧ । । ପୂର୍ବେ କୁହାଯାଇଛି, ସାରା ପୃଥିବୀରେ ଯେତେ ଗୋମହିଷାଦି ପଶୁ ଅଛନ୍ତି, ସେଥିରୁ ଏକଚତୁର୍ଥାଂଶ ଅଛନ୍ତି ଆମ ଦେଶରେ । କିନ୍ତୁ ଦୁଧର ପରିମାଣ ଆମର ଜଣପିଛା ଦୈନିକ ମାତ୍ର ଅଢ଼େଇ ଛଟାଙ୍କି । ଫଳରେ ବହୁ ଲୋକଙ୍କ ଜୀବନରେ ଦୁଧ ସଙ୍ଗେ ସାକ୍ଷାତ ହେବା ସମ୍ଭବ ହୁଏ ନାହିଁ । ପୁଣି ହାରାହାରି ପରିମାଣ ଅଢ଼େଇ ଛଟାଙ୍କି ସତ; ମାତ୍ର ପ୍ରଦେଶ ପ୍ରଦେଶ ଭିତରେ ତାରତମ୍ୟ ବହୁତ । ସରକାରୀ ରିପୋର୍ଟରୁ ଦେଖାଯାଏ- ପଞ୍ଜାବ ଓ ସିନ୍ଧୁ ପ୍ରଦେଶରେ ଦୁଧ ମିଳେ ଅନ୍ୟ ପ୍ରଦେଶ ତୁଳନାରେ ପ୍ରଚୁର । ପଞ୍ଜାବରେ ଜଣପିଛା ଦୈନିକ ହାରାହାରି ମିଳେ ୧୦ ଛଟାଙ୍କି । ସିନ୍ଧୁପ୍ରଦେଶରେ ୧୧ଛଟାଙ୍କି । ସେଠାରେ ଲୋକେ ଯେ ଅପେକ୍ଷାକୃତ ସବଳ ଓ କର୍ମପରାୟଣ ହେବେ ଏ କଥା ସ୍ୱାଭାବିକ । ବଙ୍ଗ ଓ ମାନ୍ଦ୍ରାଜ ପ୍ରଦେଶର ଅବସ୍ଥା ଅନେକ ତଳେ । ଓଡ଼ିଶାରେ ମିଳେ ଜଣ ପିଛା ଦେଢ଼ଛଟାଙ୍କିରୁ ମଧ୍ୟ ଅଳ୍ପ । ଏଥିରେ ଟିପ୍ପଣୀ ଅନାବଶ୍ୟକ ।

ଏଇ ହେଲା ଭାରତବର୍ଷରେ ଖାଦ୍ୟର ଅବସ୍ଥା । ଯୁଦ୍ଧ ପୂର୍ବେ ଏ ସମ୍ବନ୍ଧରେ ଯେପରି ଉଦ୍‌ବେଗ ପ୍ରକାଶ ପାଇଲା ପରି ଜଣା ଯାଉ ନ ଥିଲା । ୧୯୩୮ ମସିହାରେ ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟର ଅର୍ଥନୀତି ଅଧ୍ୟାପକ ଡାକ୍ତର ରାଧାକମଲ ମୁଖାର୍ଜି "ଚଉଳିଶ କୋଟି ଲୋକଙ୍କ ପାଇଁ ଖାଦ୍ୟ ଯୋଜନା" ନାମକ ପୁସ୍ତକ ପ୍ରକାଶ କଲେ । ସେଥିରେ ସେ ପ୍ରମାଣ କଲେ ଯେ, ଭାରତବର୍ଷରେ ଯେଉଁ ବର୍ଷ ଭଲ ଫସଲ ହୁଏ, ସେ ବର୍ଷ ମଧ୍ୟ ଶତକଡ଼ା

୧୨ ଜଣଙ୍କ ଲାଗି ଖାଦ୍ୟର ଅଭାବ ହୁଏ । ଅର୍ଥାତ୍ ଏ ଦେଶର ୪ କୋଟି ୮୦ ଲକ୍ଷ ଲୋକଙ୍କ ପାଇଁ ଖାଦ୍ୟ ମିଳିବା ଅସମ୍ଭବ । ପୁଣି ଝଡ଼ି ବଢ଼ି, ଧୋଇ ମରୁଡ଼ି ହେଲେ ତ ଅବସ୍ଥା ଅତି ସାଂଘାତିକ । ୧୯୫୩ ମସିହାରେ ମିଳିତ ଜାତିର ସମ୍ମିଳନୀ ବସିଥିଲା ଆମେରିକାର ହଟ୍ ସ୍ପ୍ରିଂସ୍‌ଠାରେ । ସେଠାରେ ହିସାବ କରାଯାଇଥିଲା ଯେ, ଏସିଆର ୧୧୫ କୋଟି ଲୋକଙ୍କ ମଧ୍ୟରୁ ଶତକଡ଼ା ୭୫ ଜଣ ଲୋକ ସ୍ୱାସ୍ଥ୍ୟ ଦୃଷ୍ଟିରୁ ଯାହା ଖାଇବା ଆବଶ୍ୟକ, ତହିଁରୁ ଅଳ୍ପ ଖାଦ୍ୟ ଖାଇବାକୁ ପାଆନ୍ତି । ସମ୍ଭବତଃ ଏଥିରୁ ଭାରତବର୍ଷରେ ଅନୁପାତ ଢ଼େର୍ ବେଶି । ଏବେ ପୁଣି (୧୯୫୪) ଶ୍ରୀଯୁକ୍ତ ମଶାନି ମୋଟାମୋଟି ହିସାବ ଦେଖାଇ କହନ୍ତି ଯେ, ଯଦି ପ୍ରତ୍ୟେକ ଭାରତବାସୀଙ୍କୁ ଉପଯୁକ୍ତ ପରିମାଣରେ ଖାଦ୍ୟ ଦେବାପାଇଁ ସ୍ଥିର କରାଯାଏ, ତେବେ ଏ ଦେଶରେ ବର୍ତ୍ତମାନ ଖାଦ୍ୟଦ୍ରବ୍ୟର ଯୋଗାଣ ଦୃଷ୍ଟିରୁ ସାଢ଼େ ଏଗାର କୋଟି ଲୋକଙ୍କୁ ଉପବାସ ରହିବାକୁ ପଡ଼ିବ ।

ଡାକ୍ତର ଅକ୍‌ରଏଡ୍‌ଙ୍କ ଗବେଷଣା ଅନୁସାରେ ଜଣେ ଲୋକର କେତେ ଖାଦ୍ୟ ଆବଶ୍ୟକ ସେ କଥା ପୂର୍ବେ କୁହାଯାଇଅଛି । ସେତିକି ଖାଦ୍ୟପାଇଁ, ଯୁଦ୍ଧ ପୂର୍ବରୁ ଜିନିଷ ପତ୍ରର ଦରଦାମ ଯାହା ଥିଲା, ସେହି ହିସାବରେ ଜଣ ପିଛା ବର୍ଷକୁ ଅନ୍ତତଃ ୬୫ ଟଙ୍କା ଦରକାର । ୧୯୩୨ ମସିହାରେ ଭାରତର ବାର୍ଷିକ ହାରାହାରି ଆୟ ନିରୂପଣ କରାଯାଇଥିଲା— ଜଣ ପିଛା ୬୫ ଟଙ୍କା । ଇତିମଧ୍ୟରେ ଟଙ୍କା ପଇସାର ପରିମାଣ ବଢ଼ିଛି, ଦରଦାମ ବଢ଼ିଛି, ମାତ୍ର ଜିନିଷ ହିସାବରେ ଆୟର କୌଣସି ପରିବର୍ତ୍ତନ ହୋଇ ନାହିଁ । ଜାତୀୟ ଆୟ ତଦନ୍ତ କଲେ ସେଥିରେ କେବଳ ଖାଦ୍ୟ ନୁହେଁ, ଲୁଗାପଟା, ଘରଦ୍ୱାର, ଯାନବାହାନ, ଆମୋଦ ବିଳାସର ଯାବତୀୟ ପଦାର୍ଥ ଯାହା କିଛି ବର୍ଷ ମଧ୍ୟରେ ପ୍ରସ୍ତୁତ ହୁଏ; ସେ ସବୁ ଜିନିଷର ହିସାବ କରାଯାଏ । ସେହି ଭାବରେ ବାର୍ଷିକ ଆୟ ଜଣପିଛା ୬୫ ଟଙ୍କା ଯୁଦ୍ଧପୂର୍ବର ଦରଦାମ ଅନୁଯାୟୀ । ଏଥିରୁ ସ୍ପଷ୍ଟ ବୁଝାଯିବ ଯେ, ପ୍ରତ୍ୟେକ ଭାରତବାସୀ ଯଦି କେବଳ ଖାଦ୍ୟଦ୍ରବ୍ୟ ବ୍ୟତୀତ ଅନ୍ୟାନ୍ୟ

ଯାବତୀୟ ପଦାର୍ଥ ଜଳାଞ୍ଜଳି ଦେଇ ତାର ବିନିମୟରେ ବିଦେଶରୁ ଖାଦ୍ୟ ସଂଗ୍ରହ କରନ୍ତୁ, ତା'ହେଲେ କେବଳ ପ୍ରତ୍ୟେକଙ୍କ ପାଇଁ ଉପଯୁକ୍ତ ଖାଦ୍ୟ ମିଳିବା ସମ୍ଭବ ହୋଇପାରେ । ଏଇ ହେଲା ଏ ଦେଶର ଅବସ୍ଥା । ଭାରତର ଖାଦ୍ୟ ପରିସ୍ଥିତି ଯେ ଲୋକସଂଖ୍ୟା ଅନୁପାତରେ ଅତି ସଂକଟମୟ, ଏଥିରେ ଯେ ଗଭୀର ଉଦ୍‌ବେଗ ଜନ୍ମିବାର କଥା, ଏକଥା ଆଉ ବୁଝାଇ କହିବାର ଆବଶ୍ୟକତା ନାହିଁ । ଉପସ୍ଥିତ ପରିସ୍ଥିତି ଦୃଷ୍ଟିରେ ଏ ଦେଶ ଅଯଥା-ଲୋକାରଣ୍ୟ ।

---

# ଆମଦାନି—ରପ୍ତାନି

ଆମର ଅଭାବ ଏତେ, ଏ ଦେଶରୁ ପୁଣି ଖାଦ୍ୟଶସ୍ୟ ବାହାରକୁ ଯାଏ କିପରି ? ଯେଉଁଠାରେ ଦେଶବାସୀଙ୍କ ଲାଗି ନିଅଣ୍ଟ, ସେ ଦେଶରୁ ଖାଦ୍ୟଦ୍ରବ୍ୟ ବିଦେଶକୁ ରପ୍ତାନି ହେବା କିପରି ସମ୍ଭବ ? ସିଂହଳ, ଆରବ, ଇରାନ୍ ପ୍ରଭୃତି କେତେକ ପଡ଼ୋଶୀ ଦେଶ ଖାଦ୍ୟପାଇଁ ଭାରତବର୍ଷ ଉପରେ ବହୁପରିମାଣରେ ନିର୍ଭର କରନ୍ତି । ଚାଉଳ ଆମର ଯାଏ ବାହାରକୁ ଅଳ୍ପ । ଅନ୍ୟାନ୍ୟ ଖାଦ୍ୟଦ୍ରବ୍ୟ କେତେକ ପରିମାଣରେ ବିଦେଶକୁ ଯାଏ । ଏ ସମସ୍ତ ମିଶି ଯାହା ରପ୍ତାନି ହୁଏ, ଭାରତବର୍ଷର ମୋଟ ଫସଲ ତୁଳନାରେ ତା'ର ପରିମାଣ ଅତି ଅଳ୍ପ । ଯୁଦ୍ଧ ସମୟରେ ଯେତେବେଳେ ଖାଦ୍ୟର ଭୀଷଣ ଅନାଟନ ହେଲା, କେହି କେହି କହିଲେ ଯେ ଭାରତରୁ ପ୍ରଚୁର ଖାଦ୍ୟଦ୍ରବ୍ୟ ବାହାରକୁ ଚାଲାଣ ହୋଇ ଯାଉଛି ଏବଂ ସେଥିଯୋଗୁଁ ଏ ଦେଶରେ ଏତେ ଅଭାବ । ୧୯୪୩ ମସିହା ଜାନୁଆରୀ ମାସରେ ଭାରତ ସରକାରଙ୍କ ବ୍ୟବସାୟ ଏବଂ ଖାଦ୍ୟ ବିଭାଗର ସଭ୍ୟ ଶ୍ରୀଯୁକ୍ତ ନଳିନୀରଞ୍ଜନ ସରକାର ଏଥିର ଜବାବ ଦେଇଥିଲେ । ସେ କହିଲେ, ପ୍ରକୃତ ଘଟନାରୁ ଏପରି ଅଭିଯୋଗ କରିବାର ଆଦୌ କାରଣ ନାହିଁ । ଭାରତବର୍ଷରେ ବାର୍ଷିକ ଯାହା ଖାଦ୍ୟଶସ୍ୟ ଉତ୍ପନ୍ନ ହୁଏ, ସେଥିରୁ

ସାଧାରଣତଃ ଶତକେ ଭାଗରୁ ଭାଗେ କମ୍ବା ଖୁବ୍ ବେଶି ହେଲେ ଦୁଇଭାଗ ପର୍ଯ୍ୟନ୍ତ ଶସ୍ୟ ବାହାରକୁ ରପ୍ତାନି ହୁଏ । ଏ ହେଲା ଯୁଦ୍ଧ ପୂର୍ବର କଥା । ଯୁଦ୍ଧକାଳ ମଧ୍ୟରେ କୌଣସି ବର୍ଷ ଏତେ ପରିମାଣରେ ଖାଦ୍ୟଶସ୍ୟ ରପ୍ତାନି କରାଯାଇ ନାହିଁ । ଏଥିରୁ ଅନ୍ତତଃ ଏତିକି ସ୍ପଷ୍ଟ ବୁଝାଯିବ ଯେ, ଭାରତର ଖାଦ୍ୟ ସମସ୍ୟା ଆଲୋଚନା କଲାବେଳେ ରପ୍ତାନି ଉପରେ ବିଶେଷ ଦୃଷ୍ଟି ଦେଲେ କୌଣସି ଫଳ ହେବ ନାହିଁ ।

ଭାରତରୁ ଯେତେ ଖାଦ୍ୟଶସ୍ୟ ବାହାରକୁ ଯାଏ, ତା'ଠାରୁ ବେଶି ବିଦେଶରୁ ଆମଦାନି ହୁଏ । ଯୁଦ୍ଧ କାଳର ଅବସ୍ଥା ଅଲଗା । ସାଧାରଣତଃ ଆମ ଦେଶରେ ଖାଦ୍ୟଶସ୍ୟର ରପ୍ତାନି ଅପେକ୍ଷା ଆମଦାନି ଅଧିକ । ଗୋଟିଏ ପ୍ରଦେଶରୁ ଜିନିଷ ବାହାରକୁ ଗଲାବେଳେ ଅନ୍ୟ ଏକ ପ୍ରଦେଶ ବିଦେଶରୁ ଖାଦ୍ୟ ଆମଦାନି କରେ । ସିନ୍ଧୁ ଏବଂ ପଞ୍ଜାବ ପ୍ରଦେଶରେ ବାହାରକୁ ପଠାଇବା ଲାଗି ପ୍ରଚୁର ଗହମ ହୁଏ । ମାତ୍ର ବଙ୍ଗଦେଶ ବଜାରରେ ବିକ୍ରି ହୁଏ ବେଶି ଅଷ୍ଟ୍ରେଲିଆର ଗହମ । ପଞ୍ଜାବର ଗହମ ପ୍ରତିଯୋଗିତାରେ କଲିକତା ବଜାରରେ ସମକକ୍ଷ ହୋଇପାରେ ନାହିଁ । ଜଳପଥରେ ଜିନିଷପତ୍ର ନେବା ଆଣିବାରେ ଖର୍ଚ୍ଚ କମ; ରେଳପଥରେ ଖର୍ଚ୍ଚ ଅନେକ ବେଶି । ତେଣୁ ଅଷ୍ଟ୍ରେଲିଆର ଗହମ ଅଳ୍ପ ଖର୍ଚ୍ଚରେ ସମୁଦ୍ର ପଥରେ ଆସି କଲିକତା ବଜାରରେ ବିକ୍ରି ହେବାରେ ସୁବିଧା ବେଶି । ସେଠାରେ ପଞ୍ଜାବର ଗହମ ବିକ୍ରି ହେବା ସମ୍ଭବ ହୁଏ ନାହିଁ । ପଞ୍ଜାବ ଓ ସିନ୍ଧୁ ପ୍ରଦେଶର ଗହମ ବିଦେଶକୁ ଯାଏ । ଆମଦାନି ରପ୍ତାନି ଉଭୟ ହିସାବ କରି ଦେଖିଲେ ଭାରତବର୍ଷ ଯେତେ ଗହମ ବିଦେଶରୁ ଆମଦାନି କରେ, ତା'ଠାରୁ ଅଧିକ ରପ୍ତାନି କରେ । ଚାଉଳ ବ୍ୟତୀତ ଅନ୍ୟାନ୍ୟ ସବୁ ଖାଦ୍ୟଶସ୍ୟ ସମ୍ବନ୍ଧରେ ଅବସ୍ଥା ମଧ୍ୟ ଠିକ୍ ଏହିପରି ।

ଚାଉଳ କିନ୍ତୁ ଭାରତବର୍ଷରୁ ଯାଏ ଅତି ଅଳ୍ପ । ବ୍ରହ୍ମଦେଶ, ଶ୍ୟାମଦେଶ ଏବଂ ଇଣ୍ଡୋଚାଇନା ପ୍ରଭୃତିରୁ ବହୁପରିମାଣରେ ଚାଉଳ ଏ ଦେଶକୁ ଆସେ । ଅନେକ ଅଞ୍ଚଳରେ ଏଇ ଆମଦାନି ଚାଉଳ ଉପରେ ବହୁ-

ପରିମାଣରେ ନିର୍ଭର କରିବାକୁ ହୁଏ । ଯୁଦ୍ଧକାଳ ମଧ୍ୟରେ ବ୍ରହ୍ମଦେଶ, ଶ୍ୟାମଦେଶ ପ୍ରଭୃତି ଜାପାନ ଅଧିକୃତ ହେଲା ଦିନଠାରୁ ଏସବୁ ଆମଦାନୀ ଏକାବେଳେକେ ବନ୍ଦ ହୋଇଗଲା । ପୁଣି ଜାହାଜ ଅସୁବିଧା ଯୋଗୁଁ କାନେଡ଼ା ଓ ଅଷ୍ଟ୍ରେଲିଆରୁ ମଧ୍ୟ ଗହମ ପାଇବାର ସୁବିଧା ହୋଇପାରିଲା ନାହିଁ ଖାଦ୍ୟଶସ୍ୟର ଆମଦାନି ପ୍ରାୟ ବନ୍ଦ ହୋଇଗଲା । ସବୁପ୍ରକାର ଖାଦ୍ୟଶସ୍ୟ ହିସାବ କରି ଦେଖିଲେ, ଭାରତବର୍ଷ ବର୍ଷକୁ ହାରାହାରି ପାଞ୍ଚକୋଟି ମହଣ ପର୍ଯ୍ୟନ୍ତ ବିଦେଶରୁ ଆମଦାନି କରେ । ମାତ୍ର ୧୯୪୨-୪୩ ମସିହାରେ ଆସିଲା ତାହାର ଦଶଭାଗରୁ ଭାଗେ । ଯୁଦ୍ଧକାଳ ମଧ୍ୟରେ ରପ୍ତାନିର ପରିମାଣ ବଢ଼ି ନ ଥିଲା । ମାତ୍ର ଆମଦାନିର ଏପରି ଅବସ୍ଥା ଯୋଗୁଁ, ରପ୍ତାନିର ପରିମାଣ ତାହାରୁ ହେଲା ବେଶି । ଯୋଗାଣ କମିଲା; ମାତ୍ର ନାନା କାରଣରୁ ମାଗଣ ହେଲା ବେଶି । ତେଣୁ ଜିନିସର ଦରଦାମ ହୁ ହୁ ବଢ଼ି ଚାଲିଲା । ଫଳରେ ଖାଦ୍ୟର ଅବସ୍ଥା ହେଲା ସାଙ୍ଘାତିକ । ତେଣୁ ୧୯୪୩ ମସିହାରେ ଗ୍ରେଗରି କମିଟି ସରକାରଙ୍କଠାରେ ସୁପାରିଶ୍ କଲେ, ଯୁଦ୍ଧକାଳ ମଧ୍ୟରେ ରପ୍ତାନି ବନ୍ଦ କରି ଦିଆଯାଉ ।

ଯୁଦ୍ଧକାଳର କଥା ଛାଡ଼ ଦିଆଯାଉ । ସାଧାରଣ ସମୟରେ ଆମଦାନି ଆଉ ରପ୍ତାନି ଉଭୟ ହିସାବ କରି ଦେଖିଲେ, ଆମ ଦେଶରେ ଯାହା ଫସଲ ହୁଏ, ତାହାର ଶତକଡ଼ା ପ୍ରାୟ ତିନିଭାଗ ପର୍ଯ୍ୟନ୍ତ ଖାଦ୍ୟଦ୍ରବ୍ୟ ବାହାରରୁ ଆଣିବାକୁ ହୁଏ । ସେଥିରେ ମଧ୍ୟ ସମସ୍ତଙ୍କର ପେଟ ପୂରେ ନାହିଁ । ଭାରତବର୍ଷର ସମ୍ବଳ କୃଷି । ପ୍ରକୃତିର ଦାନ ଅସୀମ । ଏପରି ଦେଶପକ୍ଷରେ ଖାଦ୍ୟଦ୍ରବ୍ୟ ଲାଗି ପରକୁ ହାତ ପତେଇବା ଅତି ଅଶୋଭନୀୟ । ଦେଶବାସୀ ସମସ୍ତଙ୍କୁ ପ୍ରଚୁର ଖାଦ୍ୟଦ୍ରବ୍ୟ ଯୋଗାଇ, ପୁଣି ଦେଶ ବିଦେଶରେ ବିକ୍ରୟ ଲାଗି ପ୍ରଚୁର ଖାଦ୍ୟଶସ୍ୟ ଉତ୍ପନ୍ନ କରିବା ଆମର ଉଚିତ । ଏଥିରେ ଅସମ୍ଭବ କଳ୍ପନାର କଥା କିଛି ନାହିଁ । ମାତ୍ର କୃଷିର ଯେପରି ଅବସ୍ଥା, ସେଥିରେ ପେଟ ପୁରାଇ ଖାଇବା ମଧ୍ୟ ଅନେକଙ୍କ ଭାଗ୍ୟରେ ସମ୍ଭବ ହୋଇପାରୁ ନାହିଁ । କୃଷିର ଉନ୍ନତି ବିଧାନ ଲାଗି ଯେଉଁ ଯୋଜନା କରାଯାଉଛି ତା

କରାଯିବ, ସେଥିରେ ଖାଲି ଭାରତବାସୀଙ୍କ ଲାଗି ପ୍ରଚୁର ଖାଦ୍ୟ ପ୍ରସ୍ତୁତ କରିବା ଲକ୍ଷ୍ୟ ନ ହୋଇ ବିଦେଶକୁ ଉଦ୍‌ବୃତ୍ତ ଖାଦ୍ୟଶସ୍ୟ ରପ୍ତାନି କରିବା ଯେପରି ସମ୍ଭବ ହେବ, ସେ ବିଧାନ ମଧ୍ୟ କରିବା ଆବଶ୍ୟକ ।

ଭାରତବର୍ଷର ଫସଲ ତୁଳନାରେ ଆମଦାନିର ପରିମାଣ ଅଳ୍ପ । ଅବଶ୍ୟ ସେତିକ ହେଉ ନ ଥିଲେ ଅବସ୍ଥା ଆହୁରି ଗୁରୁତର ହୁଅନ୍ତା । ଯୁଦ୍ଧ ସମୟ ମଧ୍ୟରେ ଅନାଟନର ଗୋଟିଏ ବିଶେଷ କାରଣ ହେଉଛି ଯେ, ଆମଦାନି ସମ୍ଭବ ହୋଇ ପାରୁନାହିଁ । ମାତ୍ର ସେତିକ ଆମଦାନିରେ ଖାଦ୍ୟ ସମସ୍ୟା ସମାଧାନ ହେବାର ନୁହେଁ । ଡାକ୍ତର ରାଧାକମଲ ମୁଖର୍ଜି ଯେଉଁ ହିସାବ କରିଛନ୍ତି, ସେଥିରେ ଆମଦାନିର ପରିମାଣ ମଧ୍ୟ ଧରି କରା-ଯାଇଛି । ଏ ସମସ୍ତ ହିସାବ କରି ତାଙ୍କ ହିସାବରେ ୪ କୋଟି ୮୦ ଲକ୍ଷ ଲୋକଙ୍କର ଏ ଦେଶରେ ଖାଦ୍ୟର ଅଭାବ । ବର୍ତ୍ତମାନ ଉପସ୍ଥିତ ସମସ୍ୟାର ଯେତେଦୂର ସମ୍ଭବ ସମାଧାନ ପାଇଁ ବିଦେଶରୁ ଅଧିକ ଆମଦାନି ପାଇଁ ଉଦ୍ୟମ କରିବା ଆବଶ୍ୟକ । କେତେବର୍ଷ ଧରି ଏ ପନ୍ଥା ଅନୁସରଣ କରିବାକୁ ହେବ । ମାତ୍ର ସ୍ଥାୟୀ ସମାଧାନ ଏଥିରେ ହେବ ନାହିଁ । ଭାରତ-ବର୍ଷ ଖାଦ୍ୟଲାଗି ପରମୁଖାପେକ୍ଷୀ ହୋଇ ନ ପାରେ । ତାକୁ ନିଜ ଗୋଡ଼ରେ ଦୃଢ଼ ଭାବରେ ଠିଆ ହେବାକୁହିଁ ହେବ ଏବଂ ତା'ଛଡ଼ା ଅନ୍ୟ ଯେଉଁ ଦେଶରେ ଅଭାବ ଅନାଟନ, ସେହି ଦେଶପାଇଁ ଉଦ୍‌ବୃତ୍ତ ଶସ୍ୟ ଉତ୍ପାଦନ କରିବା ଲାଗି ପ୍ରାକୃତିକ ବିଭବ ଭାରତବର୍ଷର ଅଛି ।

---

# ଓଡ଼ିଶା ହାଲ୍

ଧନ ଦଉଲତର ହାରାହାରି ହିସାବ ଦେଖିଲେ ଯାନର ଦୈନଂ ବିଷୟରେ ପ୍ରକୃତ ଧାରଣା ହୁଏ ନାହିଁ, କି ଧନୀର ସମ୍ପଦ ବିଷୟରେ ସଠିକ କଳ୍ପନା କରି ହୁଏ ନାହିଁ । ଯେଉଁ ଦେଶରେ କେହି ଅଠଦନ ନ ଖାଇ ରାସ୍ତା କଡ଼ରେ ପଡ଼େ, କେହି ଅଖାଦ୍ୟ ଖାଏ, ସେଇ ଦେଶରେ ଆଜି କାହାର ପ୍ରତିମାସରେ ମଟର ଗାଡ଼ିର ପରିବର୍ତ୍ତନ ନ ହେଲେ ଜୀବନ ଦୁର୍ବିସହ ହୁଏ ।ଭାରତବର୍ଷ ଏକ ବିରାଟ ଦେଶ । ଏ ଦେଶରେ ଖାଦ୍ୟ-ଦ୍ରବ୍ୟ ଉପୁଜେ କେତେ, ଲୋକଙ୍କୁ ଖାଇବାକୁ ମିଳେ କେତେ, ଏ ବିଷୟରେ ମୋଟାମୋଟି ହିସାବ ଦିଆଯାଇଛି ସତ, ମାତ୍ର ପ୍ରଦେଶ ପ୍ରଦେଶ ଭିତରେ ତାରତମ୍ୟ ଅନେକ । ପଞ୍ଜାବ, ସିନ୍ଧୁ, ବମ୍ବେ ପ୍ରଦେଶରେ ଲୋକଙ୍କର ଅବସ୍ଥା ପୂର୍ବାଞ୍ଚଳ ଲୋକଙ୍କଠାରୁ ବହୁତ ଭଲ । ସବୁଠାରୁ ହୀନ ଓଡ଼ିଶାର ଅବସ୍ଥା । ଦରିଦ୍ର ବୋଲି ଏ ପ୍ରଦେଶର ଖ୍ୟାତି ଅଛି । ସଫାଲୁଗା ଜାମା ପିନ୍ଧିଲେ, ଭାତ ସାଙ୍ଗରେ ଘିଅ ଖାଇଲେ, ଭୋଗ ବିଳାସର ଚୂଡ଼ାନ୍ତ ବୋଲି ଲୋକେ ଈର୍ଷା କରନ୍ତି । ସୁଖ ସମ୍ପଦ ଓ ଆମର ବେଶ ପୋଷାକ ଚେହେରାରୁ ପରିସ୍ଫୁଟ । ଦେଖିବାର କଥା, ଓଡ଼ିଶା ଲୋକଙ୍କ ପେଟ ପୁରାଇ ମୁଠାଏ ଖାଇବାକୁ ମିଳେ କି ନା । ଦୈବୀଦଣ୍ଡ ବର୍ଷକୁ ବର୍ଷ ଏଇ ପ୍ରଦେଶର

ଜଙ୍ଗଲ ଅଞ୍ଚଳରେ ପଡ଼େ ଏବଂ ଯୋଡ଼ ପୋଖରୀରୁ କନ୍ଦମୂଳ ଖାଇବା କେତେ ଲୋକଙ୍କ ଭାଗ୍ୟରେ ଜୁଟେ । ସେ ଦୈବୀଦଣ୍ଡ କଥା ଛାଡ଼ିଦେଇ ସାଧାରଣ ସମୟର କଥା ବିଗ୍ୱର କରାଯାଉ । ସାରା ପ୍ରଦେଶର ଅବସ୍ଥା ମୋଟାମୋଟି ବିଗ୍ୱର କରି ଦେଖିଲେ ଖାଦ୍ୟଦ୍ରବ୍ୟ ଯାହା ଉତ୍ପନ୍ନ ହୁଏ, ସେତକ ସମସ୍ତଙ୍କପାଇଁ ଯଥେଷ୍ଟ କି ନା । ଯେତେବେଳେ ଦୁର୍ଭିକ୍ଷ ପଡ଼େ, ଶହ ଶହ, ହଜାର ହଜାର ଅନାହାରରୁ ମରି ଯାଆନ୍ତି, ସେତିକବେଳେ କାଳ୍ପନିକ ଏ ସମସ୍ୟାର ଆଲୋଚନା ହୁଏ । ତା' ପରେ ଆଉ କୌଣସି ଚିନ୍ତା ନାହିଁ । ୧୯୪୩ ମସିହାର ଦୁର୍ଭିକ୍ଷଠାରୁ ଏ ସମସ୍ୟା ଯେନ ନାନା ଶୃଙ୍ଖଳ୍ୟ ଉପସ୍ଥିତ ହୋଇଛି । ଲୋକେ ଏବେ ବୁଝୁଛନ୍ତି, ଏ ଗୋଟିଏ ଖାଲି ସାମୟିକ ସମସ୍ୟା ନୁହେଁ । ଅବସ୍ଥା କ୍ରମଶଃ ଗୁରୁତର ଆକାର ଧାରଣ କରୁଛି । ଏ ଦୈନନ୍ଦିନ ସମସ୍ୟା—ଏଥିର ସ୍ଥାୟୀ ପ୍ରତିକାର ଲୋଡ଼ା ।

ଭାରତ ସରକାର ଚାଉଳ ଖରିଦ ବିକି ସମ୍ବନ୍ଧରେ ଗୋଟିଏ ରିପୋର୍ଟ ପ୍ରକାଶ କରିଛନ୍ତି । ସେଥିରେ ଲେଖାଅଛି ଓଡ଼ିଶାରେ ବର୍ଷକୁ ସାଢ଼େ ଛଅକୋଟି ମହଣ ଚାଉଳ ଉତ୍ପନ୍ନ ହୁଏ । ଓଡ଼ିଶା ସରକାରଙ୍କର ଗତ ପାଞ୍ଚବର୍ଷର ରିପୋର୍ଟରୁ ଦେଖାଯାଏ ଯେ ଓଡ଼ିଶା ଭୂଇଁରୁ ବାର୍ଷିକ ହାରାହାରି ଚାଉଳ ମିଳେ ଆଉ ଟିକିଏ ବେଶି—୩ କୋଟି ୬୦ ଲକ୍ଷ ମହଣ । ଏଇ ହିସାବ ଉପରେ ନିର୍ଭର କରି ଆମର ଅବସ୍ଥା ବିଗ୍ୱର କରାଯାଉ । ଏତିକି ମିଳେ ଆମର ଚାଉଳ । ଏ ସବୁ କିନ୍ତୁ ଖାଦ୍ୟ ହିସାବରେ ବ୍ୟବହାର କରାଯାଏ ନାହିଁ । ଓଡ଼ିଶାରେ ପାଞ୍ଚଲକ୍ଷ ସତୁରି ହଜାର ଏକର ଜମିରେ ଧାନ ବୁଣା ହୁଏ । ସେଥିପାଇଁ ବିହନ ଲୋଡ଼ା । ଯାହା ବିହନ ଆବଶ୍ୟକ ତାକୁ ଚାଉଳରେ ପରିଣତ କରି ହିସାବ କଲେ, ସେଥିପାଇଁ ୩୮ ଲକ୍ଷ ମହଣ ବାଦ୍ ଦେବାକୁ ହେବ । ପୁଣି ଧାନ ଅମଳଠାରୁ ଭାତ ହେବା ପର୍ଯ୍ୟନ୍ତ କେତେ ମୂଷା ଖାନ୍ତି, କେତେ ପୋକ ନଷ୍ଟ କରନ୍ତି । ଚାଉଳ କଲାବେଳେ, ରାନ୍ଧିଲାବେଳେ ଏବଂ ଖାଇଲାବେଳେ ମଧ୍ୟ କେତେ ଖାଦ୍ୟ ନଷ୍ଟ ହୁଏ । ବିହନ ସମେତ ଏ ସବୁ ହିସାବରେ ଶତକଡ଼ା ୧୬ ଭାଗ ବାଦ୍ ଦେବାକୁ ହେବ ବୋଲି ଧରାଯାଇଛି । ଏ

ଦରିଦ୍ର ଦେଶରେ ମଧ୍ୟ ଭୋଜି ଉତ୍ସବରେ ଖାଦ୍ୟ ନଷ୍ଟ କରିବା ଉତ୍ସବର ବିଶିଷ୍ଟ ଅଙ୍ଗ ବୋଲି ଗଣାଯାଏ । ପତ୍ରରୁ ଘିଅ ବୋହିଯାଇ ପିନ୍ଧିବା ଲୁଗା ଭିଜି ନ ଗଲେ ଭୋଜି ସାର୍ଥକ ହୁଏ ନାହିଁ ବୋଲି ଲୋକେ କହନ୍ତି । ଏ ସବୁପାଇଁ କେତେ ଖାଦ୍ୟ ବାଦ୍ ଦେବା ଉଚିତ, ସେ କଥା ହିସାବ କରିବା କଷ୍ଟକର । ତେବେ ଶତକଡ଼ା ୧୨ ଛାଡ଼ିଦେଲେ ବାକି ରହିଲା ୩ କୋଟି ୧୫ ଲକ୍ଷ ମହଣ । ସେଥି ମଧ୍ୟରୁ ଲୋକେ ଖାଇ ବଞ୍ଚିବେ ଆଉ କାହାରକୁ ଉପ୍ତ ନ ଛାଡ଼ିବାକୁ ହେବ ।

ଓଡ଼ିଶା ଆସେମ୍ବ୍ଲିରେ ଏକ ପ୍ରଶ୍ନର ଉତ୍ତରରେ ସରକାରଙ୍କ ପକ୍ଷରୁ କୁହାଗଲା ଯେ, ପ୍ରତ୍ୟେକ ପ୍ରାପ୍ତବୟସ୍କ ଲୋକପାଇଁ ଦୈନିକ ଅଧସେର ଚାଉଳ ଆବଶ୍ୟକ । ଆଉ ୨ ବର୍ଷଠାରୁ ୧୨ ବର୍ଷ ବୟସର ବାଳକ ବାଳିକାମାନଙ୍କ ପାଇଁ ହାରାହାରି ପାଏ ଚାଉଳ ଲୋଡ଼ା । ଆମ ଦେଶ ଲୋକଙ୍କ ନିମନ୍ତେ କିପରି ଖାଦ୍ୟ ହେବା ପ୍ରୟୋଜନ ସେ ବିଷୟରେ ଡାକ୍ତର ଅକ୍‌ରଏଡ୍ ଯେଉଁ ନିର୍ଦ୍ଦେଶ ଦେଇଛନ୍ତି, ସେ କଥା ପୂର୍ବେ କୁହାଯାଇଛି । ତଦନୁଯାୟୀ ଏ ସରକାରୀ ହିସାବ କରି ଯାଇଥିଲା ପରି ଅନୁମାନ ହୁଏ । ମାତ୍ର ସେ ନିର୍ଦ୍ଦେଶ ଅନୁସାରେ ଚାଉଳ ଗହମ ବ୍ୟତୀତ ଦୁଧ ଘିଅ, ମାଛ ମାଂସ, ଫଳ ଇତ୍ୟାଦି ଅନ୍ୟାନ୍ୟ ଖାଦ୍ୟପାଇଁ ବ୍ୟବସ୍ଥା ଅଛି । ଓଡ଼ିଶା ପରି ଦେଶରେ ଅଧିକାଂଶଙ୍କ ଭାଗ୍ୟରେ ଏସବୁ ମିଳିବା ଅତି କଷ୍ଟ । ତେଣୁ ବେଶିକରି ଭାତ ମୁଠାଏ ନ ମିଳିଲେ ପେଟ ପୂରିବ କିପରି ? ପୁଣି ପୁଷ୍ଟିକର ସୁସ୍ୱାଦୁ ଶିଶୁ ଖାଦ୍ୟ—ସେ ସାଧାରଣ ଓଡ଼ିଆ ପିଲାର ସ୍ୱପ୍ନ । ଶିଶୁର ଅଙ୍ଗସ୍ତ କନ୍ଦନ ଭିତରେ ମା ତା'ର ଟିକାଏ ଚାଉଳ ଚୁନାର ଖାଇ । ତେଣୁ ଛ' ମାସ ଶିଶୁର ମଧ୍ୟ ଆହାର ସେହି ଚାଉଳ ।

ତଥାପି ଏହି ସରକାରୀ ହିସାବରେ ବିଚାର କରି ଦେଖାଯାଉ । ବାର ବୟସ ଭିତରେ ଯେତେ ପିଲା ଅଛନ୍ତି, ସେମାନଙ୍କର ସଂଖ୍ୟା ଶତକଡ଼ା ପ୍ରାୟ ୩୦ । ୧୯୪୧ ସେନ୍‌ସସ୍ ଅନୁଯାୟୀ ଓଡ଼ିଶାର ଲୋକ ସଂଖ୍ୟା ୮୭ ଲକ୍ଷରୁ ଅଧିକ । ପିଲାମାନଙ୍କ ପାଇଁ ଦୈନିକ ହାରାହାରି ଏକ

ପା' ଏବଂ ପ୍ରାପ୍ତବୟସ୍କ ଲୋକଙ୍କପାଇଁ ଅଧସେର ହିସାବରେ ଓଡ଼ିଶା ଲୋକଙ୍କ ପାଇଁ ବାର୍ଷିକ ୩ କୋଟି ୭୦ ଲକ୍ଷ ମହଣ ଚାଉଳ ଆବଶ୍ୟକ । ତେଣୁ ଓଡ଼ିଶାରେ ଯାହା ମିଳେ ଚାଉଳ, ସେତକ ଏଇ ପାଏ ଅଧସେର ହିସାବରେ ମଧ୍ୟ ସମସ୍ତଙ୍କ ପାଇଁ ଯଥେଷ୍ଟ ହେବ ନାହିଁ । ବାସ୍ତବରେ ଅନୁସନ୍ଧାନ କରି ଦେଖାଯାଇଛି, ଓଡ଼ିଶାର ଗାଁ ଗହଳରେ ଜଣେ ପ୍ରାପ୍ତ-ବୟସ୍କ ଲୋକ ଦୈନିକ ହାରାହାରି ସାଢ଼େ ନଅ ଛଟାଙ୍କି ଚାଉଳର ଭାତ ଖାଏ । ଏ ହିସାବରେ ଦେଖିଲେ ଓଡ଼ିଶାର ଚାଉଳ ଓଡିଶା ଲୋକଙ୍କପାଇଁ ଅନେକ କଅଣ୍ଟ ।

ଚାଉଳ ଛଡ଼ା ଗହମ, ଯଅ, ମକା, ମାଣ୍ଡିଆ ପ୍ରଭୃତି ଫସଲ ମଧ୍ୟ ଆମର କେତେକ ପରିମାଣରେ ହୁଏ । ସେ ସବୁ ଚାଉଳ ସଙ୍ଗେ ଯୋଗକରି ଜଣପିଛା ସେଇ ଅଧସେର ଲେଖାଏଁ ହିସାବ କରି ଦେଖିଲେ ଖାଦ୍ୟଶସ୍ୟ କୌଣସିମତେ ସମସ୍ତଙ୍କ ଲାଗି ମିଳିବା ସମ୍ଭବ ହୋଇପାରେ । ମାତ୍ର ସାଢ଼େ ନଅ ଛଟାଙ୍କି ହିସାବରେ ଅଭାବ ଅନେକ । ସେଥି ସଙ୍ଗେ ସଙ୍ଗେ ପୁଣି ମନେ ରଖିବାକୁ ହେବ, ଲୋକସଂଖ୍ୟା ଦିନୁଁ ଦିନ ବଢ଼ି ଚାଲିଛି ।

ଅନେକ ଲୋକଙ୍କୁ ପ୍ରତିଦିନ ଦୁଇଥର ଭାତ ଖାଇବାକୁ ମିଳେ ନାହିଁ । ଏ କଥା ନିତି ଆଖିରେ ଦେଖା । ବିଶେଷରେ ବର୍ଷ ଶେଷବେଳକୁ ଏଣୁ-ତେଣୁ ଯାହା ତାହା ଖାଇ କୌଣସିମତେ ସେମାନେ ପେଟ ପୂରାନ୍ତି । ଗଞ୍ଜାମ କୋରାପୁଟର କେତେକ ମାଳ ଅଞ୍ଚଳରେ ଆମ୍ବ ସମୟରେ ତାହାହିଁ ହୁଏ ପ୍ରଧାନ ଖାଦ୍ୟ । ଲୋକେ ଆମ୍ବ ଟାକୁଆରୁ କୋଇଲି ବାହାର କରି ଶୁଖାଇ ରଖନ୍ତି ଏବଂ ଅଭାବବେଳେ ତାକୁହିଁ ସିଝାଇ ଖାଦ୍ୟରୂପେ ବ୍ୟବହାର କରନ୍ତି । କୌଣସି କୌଣସି ସ୍ଥାନରେ ବାଉଁଶ ଦେହରେ ଗୋଟାଏ ଜନ୍ମାଏ ବାହାରେ; ଦେଖିବାକୁ ଚାଉଳ ପରି । ତାକୁ ମଧ୍ୟ କେହି କେହି ବାଉଁଶ ଚାଉଳ ବୋଲି ଖାଦ୍ୟରୂପେ ବ୍ୟବହାର କରିବାର ଦେଖା-ଯାଏ । ଚାଉଳ ଯେଉଁମାନେ ହାଣ୍ଡିଆ ମଦ କରିଥାନ୍ତି, କେବଳ ଜଣା

ଖାଇବା ତା'ର ଅଭିପ୍ରାୟ ନୁହେଁ । ଅଳ୍ପ ଚାଉଳରେ କୌଣସି ପ୍ରକାରେ ଉଦର ଜ୍ୱାଳାର ନିର୍ବାପନ ।

ମଫସଲ ଲୋକଙ୍କର ଖାଇଲାବେଳେ ଭାତର ପରିମାଣ ଦେଖି ସହର ଲୋକେ ଆଶ୍ଚର୍ଯ୍ୟ ହୁଅନ୍ତି; ତାଚ୍ଛିଲ୍ୟ ମଧ୍ୟ କରନ୍ତି । ମାତ୍ର ସେମାନଙ୍କ ଖାଦ୍ୟରେ ବୈଚିତ୍ର୍ୟ ଅଛି କଅଣ ? ଦୁଧ, ଘିଅ, ମାଛ, ମାଂସ କେତେ ? କେତେ ଥର ଦିନ ଭିତରେ ମିଳେ ଖାଇବାକୁ ? ଏଣୁତେଣୁ ମେଞ୍ଚାଏ ଶାଗ, ପରିବା ମିଳିଲେ ଭାଗ୍ୟର କଥା । ଏଥିରେ ଭାତ ମୁଠାଏ ବେଶି କରି ନ ଖାଇଲେ ପେଟ ପୂରିବ କିପରି ? ଏ କଥା ଜାଣିଶୁଣି ଜଣପିଛା ବାଲେଶ୍ୱର ଅଧସେର ମାତ୍ର ଚାଉଳ ଆବଶ୍ୟକ ବୋଲି କହିଲେ ଅବସ୍ଥାର ସଠିକ ଚିତ୍ର ହେବ ନାହିଁ ।

ଏଇ ହେଲା ଓଡ଼ିଶାର ଚାଉଳ ଅବସ୍ଥା । ଗହମ, ମାଣ୍ଡିଆ, ଯଅ ପ୍ରଭୃତି ମଧ୍ୟ ଏଥିସଙ୍ଗେ ବିଚାର କରାଯାଇଛି । ଅନ୍ୟ ସବୁ ସାରବାନ୍ ଖାଦ୍ୟ ସମ୍ପର୍କରେ ବିଚାର କରିବା ଦରକାର ନାହିଁ । ସେ ସବୁ ବିଷୟରେ ଓଡ଼ିଶାର ଅବସ୍ଥା ସବୁଠାରୁ ହୀନ । ଚାଉଳ ଓଡ଼ିଶାରୁ ପ୍ରତିବର୍ଷ ରପ୍ତାନି ହୁଏ । ସରକାରଙ୍କ ତରଫରୁ ଆସେମ୍ବ୍ଲିରେ ଜଣାଇ ଦିଆ ଯାଇଥିଲା ଯେ, ରେଲ ପଥରେ ବର୍ଷକୁ ହାରାହାରି ୪୨ ଲକ୍ଷ ମହଣ ଚାଉଳ ବାହାରକୁ ପଠାଯାଏ । ଗଡ଼ଜାତରୁ ଚାଉଳ ଓଡିଶା ଭିତର ଦେଇ ବିଦେଶକୁ ଯାଏ । ତେଣୁ ସମୁଦାୟ ରପ୍ତାନି ମଧ୍ୟରୁ ଓଡ଼ିଶାରୁ ଯାଏ କେତେ, ଗଡ଼ଜାତରୁ କେତେ, କହିବା କଠିନ । ସରକାର ଜଣାଇ ଥିଲେ ଯେ, ଏଥିମଧ୍ୟରୁ ଅନ୍ତତଃ ତିନିଭାଗରୁ ଭାଗେ, ପ୍ରାୟ ଅଧେ ପର୍ଯ୍ୟନ୍ତ ଚାଉଳ ଗଡ଼ଜାତର । ପୁଣି ଚାଉଳ ଖାଲି ଯେ ରେଲପଥରେ ଯାଏ, ତା ନୁହେଁ । ରପ୍ତାନି ପାଇଁ ଅନ୍ୟ ପଥ ମଧ୍ୟ ଅଛି । ତେଣୁ ଉପରେ ଯେଉଁ ହିସାବ ଦିଆଯାଇଛି, ତା'ଠାରୁ ଅଧିକ ପରିମାଣରେ ଚାଉଳ ଓଡ଼ିଶାରୁ ନିଶ୍ଚୟ ରପ୍ତାନି ହୁଏ । ୧୯୪୩ ମସିହା ଦୁର୍ଭିକ୍ଷ ଦିନଠାରୁ ଏ ରପ୍ତାନି ବିଷୟରେ ବାଦାନୁବାଦ ଚାଲିଛି । ଦେଶର ଚାଉଳ ଯେତେବେଳେ ଦେଶବାସୀଙ୍କ ପାଇଁ ନିଅଣ୍ଟ,

ତାଙ୍କ ମୁହଁରୁ ଛଡ଼ାଇ ନେଇ ବାହାରକୁ ରପ୍ତାନି କରିବା କି ପ୍ରକାର ନୀତି ? ଅଥେ ଉପବାସ ରହି ବଳକା ପ୍ରଦେଶ ବୋଲି ଦେଖେଇବାର ମତଲବ କଣ ? ଏ ସବୁ ଯୁକ୍ତି କିନ୍ତୁ ଖାଲି ଭାବପ୍ରବଣତା । କୌଣସି ବର୍ଷ ଦୈବୀ ଦୁର୍ଘଟନାରୁ ଦେଶରେ ଖାଦ୍ୟସଙ୍କଟ ଉପସ୍ଥିତ ହେଲେ, ସେହି ବର୍ଷ ପାଇଁ ଚାଉଳ ରପ୍ତାନି ବନ୍ଦ କରିବା ବା ନିୟନ୍ତ୍ରିତ କରିବା ବିଧେୟ ହୋଇପାରେ । ସେ କଥା ସ୍ୱତନ୍ତ୍ର । ମାତ୍ର ବର୍ଷକୁ ବର୍ଷ ବାହାରକୁ ପଠାଇବାକୁହିଁ ହେବ । ଓଡ଼ିଶା ଚାଉଳ ରପ୍ତାନି କରିବାକୁହିଁ ବାଧ୍ୟ; ତାକୁ ବନ୍ଦ କରିବାଲାଗି ଚେଷ୍ଟା କରିବା ବିଡ଼ମ୍ବନା । ଓଡ଼ିଶା ଭିତରେ କେହି ଲୋକ ଅନାହାରରେ ଅଛନ୍ତି ବୋଲି ଯାହାର ଅଛି ସେ ଅନ୍ନଛତ୍ର ଖୋଲି ବସିବ ନାହିଁ । ଯାହାର ଚାଉଳ ନାହିଁ, ତା' ପାଖରେ ଚାଉଳ କିଣିବାଲାଗି ପଇସା ଥିବା ଦରକାର । ତା' ନ ହେଲେ ଚାଉଳ ପାଇଁ ସୁବିଧା ବଜାର ଖୋଜି ବୁଲିବ; ଅନ୍ୟତ୍ର ବିକି ହେବ, ତେଣୁ ଦେଶର ଚାଉଳ ଦେଶରେ ରଖିବାକୁ ହେଲେ ସମସ୍ତଙ୍କର ଉପାର୍ଜନ କରିବା ଆବଶ୍ୟକ; ଆଉ ସେଥିଲାଗି ସମସ୍ତଙ୍କ ପାଇଁ ଉପଯୁକ୍ତ କର୍ମର ବ୍ୟବସ୍ଥା କରିବାକୁ ହେବ ।

ଶିଳ୍ପ-ସମ୍ପଦ ହିସାବରେ ଆମର ସ୍ଥାନ କାହିଁ କେତେ ତଳେ । ତେଣୁ ଦେଶର ଶିଳ୍ପଜାତ ପଦାର୍ଥ ବିଦେଶରେ ବିକି ଖାଦ୍ୟ ସଂଗ୍ରହ କରିବାର କ୍ଷମତା ଆମର ନାହିଁ । ପୁଣି ଲୁଣ, ତେଲ, ଲୁଗାପଟା ପ୍ରଭୃତି ନିତାନ୍ତ ଆବଶ୍ୟକ ଜିନିସଠାରୁ ଆରମ୍ଭ କରି ସୁଖ ସ୍ୱାଚ୍ଛନ୍ଦ୍ୟ, ଭୋଗ ବିଳାସର ଯାବତୀୟ ସାମଗ୍ରୀ ଅଧିକାଂଶ ବାହାରରୁ କିଣିବାକୁ ହେବ । ଚାଉଳ ଛଡ଼ା ଅନ୍ୟାନ୍ୟ କୃଷିଜାତ ଦ୍ରବ୍ୟପାଇଁ ମଧ୍ୟ ଅନ୍ୟ ଉପରେ ନିର୍ଭର କରିବାକୁ ହୁଏ । ଏସବୁ ଜିନିସ ଲାଗି ବିନିମୟରେ ଦେବାପାଇଁ ଅଛି ଆମର କ'ଣ ? ଦେବାପାଇଁ ଅଛି ଆମର ଚାଉଳ ଆଉ ଶାରୀରିକ ଶ୍ରମ । ତେଣୁ ପ୍ରତିବର୍ଷ ଓଡ଼ିଶାରୁ ଚାଉଳ ରପ୍ତାନି ହୁଏ ଏବଂ ହେବାକୁ ବାଧ୍ୟ । ଆଉ ଓଡ଼ିଆ ଶ୍ରମିକ କଲିକତା, ଜାମସେଦପୁର, ରେଙ୍ଗୁନରେ ଚାକିରି କରିବେ; ଗତ୍ୟନ୍ତର ନାହିଁ । ଅବଶ୍ୟ ନଡ଼ିଆ, ଝୋଟ ଆଉ ଚଳିକାର ମାଛ ପ୍ରଭୃତି

କେତେକ ଜିନିଷ ବିଦେଶକୁ ରପ୍ତାନି ହୁଏ; ମାତ୍ର ସେ ସବୁର ମୂଲ୍ୟ ଅତି ଅଳ୍ପ । ତେଣୁ ଗୃହଜାତ ରପ୍ତାନି ନ କରି ଓଡ଼ିଶାର ଅନ୍ୟ ଗତି ନାହିଁ । ଓଡ଼ିଶା ଲୋକଙ୍କୁ ପେଟ ପୁରାଇ ଖାଇବାକୁ ଦେବାକୁ ହେବ । ତେଣୁ ଗୃହଜାତ ରପ୍ତାନି ବନ୍ଦ କରିବା ଦରକାର—ଏ ବିବେଚନାର କଥା ନୁହେଁ । ସେଥିପାଇଁ ଓଡ଼ିଶା ଭୂଇଁରୁ ଅଧିକ ଶସ୍ୟ ଉପୁଜାଇବା ଆବଶ୍ୟକ; ଅଉ ବେଶି ଆବଶ୍ୟକ, ଓଡ଼ିଶା ଲୋକଙ୍କୁ ଯଥେଷ୍ଟ କାମ ଯୋଗାଇବା ପାଇଁ ବିବିଧ ଶିଳ୍ପର ପ୍ରସାର । ସବୁ ଲୋକଙ୍କ ପାଇଁ କାମ ମିଳିବାର ବ୍ୟବସ୍ଥା ନ ହେଲେ ଖାଦ୍ୟ ସମସ୍ୟାର ସମାଧାନ ହେବ ନାହିଁ ।

---

# ଫଳାଫଳ

ସାରବାନ୍ ସୁଖାଦ୍ୟ ତ ଦୂରର କଥା, ପେଟ ପୁରାଇ ଯଦି ପ୍ରତିଦିନ ମୁଠାଏ ଖାଇବାକୁ ନ ମିଳେ, ତେବେ ଅବସ୍ଥା ହେବ କଅଣ ? ଅଳ୍ପ ଖାଦ୍ୟ ଖାଇ ଏବଂ ଅଗତ୍ୟା ଅଖାଦ୍ୟ ଖାଇ ମଣିଷ ସୁସ୍ଥ ସବଳ ହେବ କିପରି ? ତା'ର ପରମାୟୁ ହେବ କେତେ ? କାମ କରିବାର ଶକ୍ତି ଆସିବ କାହୁଁ ? ଇଉରୋପ ଆମେରିକାରେ ଶ୍ରମିକମାନେ କାମ କରି ପାରନ୍ତି ବେଶି; ତେଣୁ ମଜୁରି ପାଆନ୍ତି ଅଧିକ । ଆମ ଦେଶର ଶ୍ରମିକ ଗୃହବାସରେ କିମ୍ବା କଳ କାରଖାନାରେ କୌଣସିଠାରେ କଠିନ ପରିଶ୍ରମ କରି ପାରେ ନାହିଁ— ତେଣୁ ତା'ର ମଜୁରି ଅଳ୍ପ ହେବା ସ୍ୱାଭାବିକ । ଏ ଅଭିଯୋଗ ନିଶ୍ଚୟ ସତ୍ୟ; ମାତ୍ର ଏଥିରୁ ନିସ୍ତାର ନାହିଁ । ହିସାବ କରି ଦେଖାଯାଇଛି, ଆମ ଦେଶରେ ଜଣେ ଶ୍ରମିକ ଯେତେ କୋଇଲା ଖୋଳିପାରେ, ଜର୍ମାନିର ଜଣେ ଲୋକ ଖୋଳେ ତା'ର ତିନିଗୁଣ; ବିଲାତରେ ତହିଁରୁ ଅଧିକ ଏବଂ ଆମେରିକାରେ ସାତଗୁଣ । ଭାରତବର୍ଷରେ ଲୁଗା କଳରେ ଜଣେ ଶ୍ରମିକ ଯେତିକି କାମ କରିପାରେ, ମାଞ୍ଚେଷ୍ଟରର ଶ୍ରମିକ କରେ ତା'ର ଛଅଗୁଣ । ପ୍ରାୟ ସବୁ ପ୍ରକାର କଳ କାରଖାନାରେ ଅବସ୍ଥା ଏହିପରି । ଶିଳ୍ପ କମିଶନ୍ ଆଗରେ ସାକ୍ଷ୍ୟ ଦେଲାବେଳେ ମାର୍କ ରବର୍ଟ ସାହେବ ଦେଖାଇଥିଲେ ଯେ, ଜଣେ

ବଳଘଟ ଶ୍ରମିକର କାମ କରିବାର ଶକ୍ତି ଭାରତୀୟ ଶ୍ରମିକର ପ୍ରାୟ ଚାରିଗୁଣ । ସେ ଦେଶର ଶ୍ରମିକ ଯେ ବେଶି ରୋଜଗାର କରିବ ଏଥିରେ ସନ୍ଦେହ କଣ ? ଆମ ଲୋକଙ୍କ ପକ୍ଷରେ ଚାଲ ବାଡ଼ରେ ଖରାଟରାରେ ନବଷ୍ଟଭାବରେ ପାଞ୍ଚ ଛ ଘଣ୍ଟା ପରିଶ୍ରମ କରିବା କଷ୍ଟକର । କାମ କମ ହେଲେ ରୋଜଗାର ହୁଏ କମ; ଆଉ ଖାଇବାକୁ ଯଥେଷ୍ଟ ମିଳିବ କୁଆଡ଼ୁ ? ଏ କିନ୍ତୁ ଗୋଟାଏ ଗୋଲକଧନ୍ଦା । ଖାଇବାର ଅଭାବ ହେଲେ କାମ କରିବାର ଶକ୍ତି କମି ଯିବାର କଥା । ପୁଣି କାମ କରିବାର ଶକ୍ତି ନ ଥିଲେ ଉପାର୍ଜନ ହେବ କମ, ଖାଇବାର ହେବ ଅଭାବ । ଏ ସମସ୍ୟା ଆମ ଦେଶରେ ଦିନୁଦିନ ଗୁରୁତର ହୋଇ ଉଠୁଛି ।

କେହି କେହି ଯୁକ୍ତି କରିବାର ଶୁଣାଯାଏ, ଭାରତବର୍ଷରେ ମଜୁରି କମ । ତେଣୁ କଳ କାରଖାନାରେ ଯେ କୌଣସି ଜିନିଷ ତିଆରି କଲେ ସ୍ୱତଃ ଖର୍ଚ୍ଚ ହୁଏ ଅଳ୍ପ । ଏ ଯୁକ୍ତି କିନ୍ତୁ ଅଛି ଭ୍ରମାତ୍ମକ । ଶ୍ରମିକ ମଜୁରି ପାଏ କମ୍; କାମ ମଧ୍ୟ କରେ କମ । ସୁତରାଂ କୌଣସି ଜିନିଷ ପ୍ରସ୍ତୁତ କରିବା ଲାଗି ବହୁତ ବେଶି ଶ୍ରମିକ ଆବଶ୍ୟକ ହୁଅନ୍ତି । ଜିନିଷର ମୂଲ୍ୟ ତେଣୁ ହୋଇପଡ଼େ ଖୁବ୍ ବେଶି । ବିଦେଶୀ ଜିନିଷ ଆଗରେ ମୁଣ୍ଡ ଟେକି ଠିଆ ହେବା ଆଉ ସମ୍ଭବ ହୋଇପାରେ ନାହିଁ ।

ଖାଲି କାର୍ଯ୍ୟକ୍ଷମ ହେବାଲାଗି ଯେ ଖାଦ୍ୟର ଆବଶ୍ୟକ, ତାହା ନୁହେଁ । ଖାଦ୍ୟହିଁ ମନୁଷ୍ୟକୁ ସୁନ୍ଦର କରେ, ସୁରୂପ ଦିଏ । ବିଦେଶୀ ଲୋକଙ୍କ କଥା ଛାଡ଼ି ଦିଆଯାଉ । ଆମର ଏହି ଭାରତବର୍ଷ ଭିତରେ ସୀମାନ୍ତ ପ୍ରଦେଶ, ପଞ୍ଜାବ ଆଉ ଯୁକ୍ତପ୍ରଦେଶର ଲୋକଙ୍କ ପ୍ରତି ଦୃଷ୍ଟିଦେଲେ ସହଜରେ ବୁଝାଯାଏ—ଓଡ଼ିଆ, ବଙ୍ଗାଳୀଙ୍କଠାରୁ ତାରତମ୍ୟ କେତେ ? ସେ ଅଞ୍ଚଳର ଲୋକଙ୍କ ସାମନାରେ ଠିଆ ହେଲେ ସଙ୍କୁଚିତ ବୋଧ ହୁଏ । କୁହାଯାଇ ପାରେ ଏଥିର କାରଣ ସେଠାର ଜଳବାୟୁ ଏବଂ ସେଠାର ବଂଶଗତ ପରମ୍ପରାର ଫଳ । ଏ ସବୁର ପ୍ରଭାବ ଯେ ଅଛି, ଏଥିରେ ସନ୍ଦେହ ନାହିଁ । ମାତ୍ର ଖାଦ୍ୟର କାରାମତି ଏଥିରେ ବହୁତ । ଆମର ଏଇ

ଓଡ଼ିଶା ରାଜ୍ୟରେ ଧନୀ ଜମିଦାର ରାଜ ପରିବାରରେ ସୁନ୍ଦର ସୁଠାମ ଯୁବକ ଯୁବତୀ ଅଛନ୍ତି । ଏଇ ଦେଶର ଦରିଦ୍ର ପରିବାରର ଲୋକେ ଧନୀ ପରିବାରର ଲୋକଙ୍କଠାରୁ ଅପେକ୍ଷାକୃତ ଚେହେରାରେ ହୀନ । ମଣିଷର ରୂପ ଉପରେ ଖାଦ୍ୟର ପ୍ରଭାବ ଖୁବ୍ ବେଶୀ ।

ପୁଣି ଦେହକୁ କାର୍ଯ୍ୟକ୍ଷମ କରିବା ଲାଗି ଯେଉଁ ଖାଦ୍ୟ ଆବଶ୍ୟକ, ଖାଲି ସେଥିକରେ ଲୋକ ସୁସ୍ଥ, ନୀରୋଗ ହୁଏ ନାହିଁ । ଦୈନନ୍ଦିନ ଖାଦ୍ୟ ମଧ୍ୟରେ ସେଥିପାଇଁ ମଧ୍ୟ ଉପାଦାନ ରହିବା ଆବଶ୍ୟକ । ସବୁ ପ୍ରକାର ଭିଟାମିନ ଉପଯୁକ୍ତ ପରିମାଣରେ ଖାଦ୍ୟରେ ସ୍ଥାନ ନ ପାଇଲେ ଶରୀର ସୁସ୍ଥ ଏବଂ ନୀରୋଗ ହୋଇ ପାରିବ ନାହିଁ । ସେଥିଲାଗି ମାଛ, ମାଂସ, ଦୁଧ, ଘିଅ, ଅଣ୍ଡା ଏବଂ ନାନାଜାତିର ଫଳ ପ୍ରୟୋଜନ । କେବଳ ଗୋଟାଏ ଜିନିଷ ଯଥେଷ୍ଟ ପରିମାଣରେ ପେଟ ପୂରାଇ ଖାଇ ପାରିଲେ ଉପଯୁକ୍ତ ସାର ଶରୀର ପାଏ ନାହିଁ । ବଙ୍ଗଳା, ଓଡ଼ିଶା ଏବଂ ମାନ୍ଦ୍ରାଜ ପ୍ରଦେଶରେ ସାଧାରଣ ଲୋକେ ପ୍ରାୟ ସମ୍ପୂର୍ଣ୍ଣ ଭାବରେ ନିର୍ଭର କରନ୍ତି ଖାଲି ଭାତ ଗଣ୍ଡାକ ଉପରେ । ଏଥିରେ ପେଟ ପୂରି ପାରେ, ମାତ୍ର ଶରୀର ଉପଯୁକ୍ତ ଆହାର ପାଏ ନାହିଁ । ଆଜିକାଲି ସମସ୍ତେ ସବୁଆଡ଼େ ବୁଝିଲେଣି, ବହୁଳ ଜାତିର ଖାଦ୍ୟ ଭୋଜନର ଅଙ୍ଗୀଭୂତ ହେବା ପ୍ରୟୋଜନ । ସେଥିପାଇଁ ସବୁ ଦେଶରେ ଚେଷ୍ଟା ମଧ୍ୟ ହେଉଛି । ମାତ୍ର ଏ ଦରିଦ୍ର ଦେଶରେ ସେ ବିଚାର କରିବା ବୋଧହୁଏ ଅସଙ୍ଗତ ।

ଖାଦ୍ୟର ଉନ୍ନତି କରିବା ପାଇଁ ଉନ୍ନତ ଦେଶରେ ନାନା ଉଦ୍ୟମ କରାଯାଇଛି । ୧୯୦୨ ମସିହାରେ ବୋ'ର ଯୁଦ୍ଧ ସମୟରେ ଯେତେବେଳେ ବିଲାତରେ ସୈନ୍ୟ ସଂଗ୍ରହ କରାଗଲା, ସେତେବେଳେ ୫ ଫୁଟ ୬ ଇଞ୍ଚ ସ୍ଥାନରେ ସୈନିକ ହେବାଲାଗି ଉଚ୍ଚତା ୫ ଫୁଟ କରି ଦିଆଗଲା । ନ ହେଲେ ଉପଯୁକ୍ତ ସଂଖ୍ୟକ ସୈନ୍ୟ ମିଳି ପାରିଲେ ନାହିଁ । ସାଧାରଣ ଖାଦ୍ୟ ସେତେବେଳେ ଥିଲା, ବ୍ରେଡ, ଅଳ୍ପ ଅଳ୍ପ ଚନି । ତା' ପରେ ସରକାର ଲାଗି ପଡ଼ିଲେ ଏ ସମସ୍ୟାର ସମାଧାନ ପାଇଁ । ସାଧାରଣ ସ୍ୱାସ୍ଥ୍ୟ

ନିମନ୍ତେ ନାନା ବ୍ୟବସ୍ଥା କରାଗଲା । ତାହି ସଙ୍ଗେ ସଙ୍ଗେ ଉପଯୁକ୍ତ ଖାଦ୍ୟର ବିଧାନ ମଧ୍ୟ ହେଲା । ସ୍କୁଲମାନଙ୍କରେ ଦୁଧ, କଡ଼ମାଛ ତେଲ ଇତ୍ୟାଦି ବିନା ମୂଲ୍ୟରେ ବା ଅତି ଅଳ୍ପ ମୂଲ୍ୟରେ ଯୋଗାଇ ଦିଆଗଲା । ସେ ଦେଶରେ ବାଧ୍ୟତାମୂଳକ ଶିକ୍ଷା । ପ୍ରତ୍ୟେକ ବାଳକ ବାଳିକା ସ୍କୁଲରେ ପଢ଼ିବାକୁ ବାଧ୍ୟ । ତେଣୁ ବିଲାତର ସମସ୍ତ ଶିଶୁ ଏ ଖାଦ୍ୟ ଖାଇବାକୁ ପାଇଲେ । ୧୯୧୪ ମସିହାରେ ମହାଯୁଦ୍ଧ ବେଳକୁ ଦେଖାଗଲା, ଖାଦ୍ୟାଭାବରୁ ଯେଉଁ ସବୁ ରୋଗ ହୁଏ, ସେ ସବୁ ଏକାବେଳେକେ ଲୋପ ପାଇଛି । ଶିଶୁ ମରଣ ଏବଂ ଯକ୍ଷ୍ମା ପ୍ରଭୃତି ରୋଗ ଶତକଡ଼ା ୫୦ ଭାଗ କମି ଯାଇଛି । ମାତ୍ର ୧୫ ବର୍ଷ ମଧ୍ୟରେ କି ଅଦ୍ଭୁତ ପରିବର୍ତ୍ତନ । ଖାଦ୍ୟ ଯୋଜନାରେ ବରାବର କ୍ରମୋନ୍ନତି ଚାଲିଛି । ୧୯୧୪ ବେଳକୁ ଲୋକେ ଦୁଧ, ଛେନା, ଲହୁଣୀ, ଅଣ୍ଡା ଏବଂ ଫଳ ଯେଉଁ ପରିମାଣରେ ଖାଇବାକୁ ପାଉଥିଲେ, ୧୯୩୪ ବେଳକୁ ତାହିରେ ଶତକଡ଼ା ୬୦ ଭାଗ ଅଧିକ ହେଲା । ଗତ ୩୦ ବର୍ଷ ମଧ୍ୟରେ ବିଲାତରେ ବହୁ ଉନ୍ନତି କରାଯାଇଛି । ପୁରୁଷେ ତଲେ ସ୍କୁଲ ଛାତ୍ର ଛାତ୍ରୀମାନଙ୍କର ଓଜନ ଯାହା ଥିଲା, ବର୍ତ୍ତମାନ ତା'ଠାରୁ ଅନେକ ବଢ଼ିଯାଇଛି । ହାରାହାରି ଉଚ୍ଚତା ମଧ୍ୟ ଦୁଇ ଇଞ୍ଚ ଅଧିକ ହୋଇଛି । ୧୯୩୯ରେ ଯୁଦ୍ଧ ଆରମ୍ଭ ହେଲାବେଳକୁ ଇଂରେଜ ଲୋକଙ୍କ ପାଇଁ ଖାଦ୍ୟର ବ୍ୟବସ୍ଥା ଥିଲା ଅତି ଚମତ୍କାର । ଏ ବିରାଟ ଜାତୀୟ ଗୌରବ । ଏଥିପାଇଁ ଗର୍ବ ଅନୁଭବ କରିବା ଯଥାର୍ଥ ।

ଏସବୁ ଶୁଣିଲେ ଆମକୁ ଆହ୍ଲାଦ ଦିନ ଟିକେ ଶୁଣିଲା ପରି ଲାଗେ । ଆମ ଦେଶର ଅବସ୍ଥା କାହିଁ କେତେ ତଳେ । ହିସାବ ପତ୍ର ତ ନାହିଁ, ତେବେ ଲୋକେ କହନ୍ତି, ଆଗେ ଏ ଦେଶରେ ସୁନ୍ଦର ସୁପୁରୁଷ 'ପଞ୍ଝାହାତା' ଲୋକ ଥିଲେ, କେତେ ଅସାଧ୍ୟ ସାଧନ କରି ପାରୁଥିଲେ । ଖାଇବାକୁ ଉପଯୁକ୍ତ ଖାଦ୍ୟ ନ ମିଳିଲେ ମଣିଷର ପରମାୟୁ ହେବ କେତେ ? ପୂର୍ବେ କୁହାଯାଇଛି, ପ୍ରତି ହଜାରକରେ ଆମ ଦେଶରେ ମୃତ୍ୟୁର ସଂଖ୍ୟା ବର୍ଷକୁ ୨୩ । ପୃଥିବୀର ଅନ୍ୟ ଦେଶରେ ମୃତ୍ୟୁର ହାର କ୍ୱଚିତ୍ ଏତେ ବେଶି ।

ଏ ଦେଶରେ ଯେତେ ଶିଶୁ ଜନ୍ମ ହୁଅନ୍ତି, ତନ୍ମଧ୍ୟରୁ ବର୍ଷେ ନ ପୂରୁଣୁ ହଜାରକରୁ ମରନ୍ତି ୧୬୨ ଜଣ, ଇଂଲଣ୍ଡରେ ୪୮ ଆଉ ଆମେରିକାରେ ୫୪ । ଏ ଦେବଭୂମି ଭାରତବର୍ଷରେ ଶିଶୁଟିଏ ହାରାହାରି ହିସାବରେ ମାତ୍ର ୨୭ ବର୍ଷ ପରମାୟୁ ଘେନି ଭୂମିଷ୍ଠ ହୁଏ । ଅବଶ୍ୟ ୨୭ ବର୍ଷରୁ ଅଧିକ ବଞ୍ଚିଲେ ତାକୁ ପ୍ରେତ ବୋଲି ଧରାଯାଏ ନାହିଁ; ମାତ୍ର ଯେଉଁ ବୟସରେ ଲୋକେ ଏ ଦେଶରେ ଜୀବନ ଲୀଳା ସାଙ୍ଗ କରନ୍ତି, ସେ ସବୁ ହିସାବ କଲେ ହାରାହାରି ଭାବରେ ୨୭ବର୍ଷ ମାତ୍ର ଏ ଦେଶରେ ପରମାୟୁ । ନିଉଜିଲାଣ୍ଡରେ ହାରାହାରି ଜୀବନ କାଳ ପୃଥିବୀରେ ସବୁଠାରୁ ବେଶି—୬୬ ବର୍ଷ । ଇଂଲଣ୍ଡ ଏବଂ ଆମେରିକାରେ ୬୨, ଜାପାନରେ ୪୭ । ଏ ସମସ୍ତ ଦେଶରେ ହାରାହାରି ପରମାୟୁ କ୍ରମେ ବଢ଼ୁଛି । ଆମର କିନ୍ତୁ ଅବସ୍ଥାରେ କୌଣସି ପରିବର୍ତ୍ତନ ନାହିଁ ।

ଖାଲି ଏକା ଭାରତବର୍ଷକୁ ଛାଡ଼ି ଦେଲେ ପୃଥିବୀର ଆଉ ସବୁ ଦେଶରେ ସାଧାରଣତଃ ପୁରୁଷଙ୍କଠାରୁ ସ୍ତ୍ରୀ ଲୋକେ ବଞ୍ଚନ୍ତି ବେଶି ଦିନ । ଆମ ଦେଶରେ ଯେତେ ଶିଶୁ ଜନ୍ମ ହୁଅନ୍ତି, ସେଥିରେ ପୁଅଙ୍କଠାରୁ ଝିଅଙ୍କ ସଂଖ୍ୟା ବେଶି । ମାତ୍ର ୧୨ ବର୍ଷ ଠାରୁ ୧୮ ବର୍ଷ ଭିତରେ ଏତେ ବାଳିକା-ଯୁବତୀ ମୃତ୍ୟୁର କବଳରେ ପଡ଼ନ୍ତି ଯେ ମୋଟ ହିସାବରେ ଏ ଦେଶରେ ପୁରୁଷଙ୍କ ସଂଖ୍ୟା ସ୍ତ୍ରୀ ଲୋକଙ୍କଠାରୁ ଅଧିକ । ଖାଦ୍ୟର ଅଭାବ, ତେଣୁ ଦୁର୍ବଳ ଏବଂ ଅପରିପୁଷ୍ଟ—ପ୍ରଥମ ସନ୍ତାନ ପ୍ରସବରେ ବହୁ ପ୍ରସୂତିଙ୍କର ମୃତ୍ୟୁ ହୁଏ । ବାଲ୍ୟ ବିବାହ ଏବଂ ପର୍ଦ୍ଦାପ୍ରଥା ଅବଶ୍ୟ ଅନ୍ୟ କାରଣ । ହିସାବ କରି ଦେଖାଯାଇଛି, ଭାରତବର୍ଷରେ ପ୍ରତିବର୍ଷ ଅନ୍ତତଃ ଦୁଇ ଲକ୍ଷ ଜନନୀ ସନ୍ତାନ ପ୍ରସବରେ ପ୍ରାଣ ହରାନ୍ତି । ନାରୀର ଯୌବନ ଏ ଦେଶରେ ଜହ୍ନି ଫୁଲ ପରି । କଥାରେ ଅଛି "ଝିଅ ହେଲେ ବୁଢ଼ୀ ।" ଆଉ ଯାହା କାରଣ ଥାଉ ପଛେ, ଉପଯୁକ୍ତ ଖାଦ୍ୟର ଅଭାବ ଯେ ଏକ ବିଶିଷ୍ଟ କାରଣ, ଏଥିରେ ସନ୍ଦେହ ନାହିଁ । ପୁରୁଷଙ୍କ ଖାଦ୍ୟର ଅବଶିଷ୍ଟାଂଶ ସ୍ତ୍ରୀଙ୍କର ଭାଗ୍ୟରେ ପଡ଼େ । ତେଣୁ ସମସ୍ତଙ୍କ ଲାଗି ଯଥେଷ୍ଟ ଖାଦ୍ୟର ବ୍ୟବସ୍ଥା ନ ଥିବା ସ୍ଥଳେ ଏ ଦେଶରେ ନାରୀ-ସ୍ୱାସ୍ଥ୍ୟ ଅପେକ୍ଷାକୃତ ହୀନତର ହେବା ସ୍ୱାଭାବିକ ।

ଏପରି ବୋଧହୁଏ କୌଣସି ରୋଗ ନାହିଁ, ଯାହାର ଅସ୍ଥାନ ନାହିଁ ଭାରତବର୍ଷରେ । ଆଜିକାଲି ଯାତାୟାତର ସୁବିଧା ସୁଯୋଗ ଯେ ପରିମାଣରେ ବଢ଼ିଛି, ସେଥିରେ ରୋଗର ଦେଶ ବିଦେଶ ବ୍ୟାପିବା ମଧ୍ୟ ସହଜ ହୋଇଛି । ସକଳ ପ୍ରକାର ରୋଗକୁ ଅଭ୍ୟର୍ଥନା କରିବାଲାଗି ଆମର କ୍ଷେତ୍ର ପ୍ରସ୍ତୁତ । ଇଟାଲିରେ ମେଲେରିଆର ଜନ୍ମ । ସେଠାରୁ ବିତାଡ଼ିତ ହୋଇ ରାଜତ୍ୱ କରୁଛି ଭାରତବର୍ଷରେ । ଆମର ସାଧାରଣ ସ୍ୱାସ୍ଥ୍ୟ ପାଇଁ ଯାହା ବ୍ୟବସ୍ଥା, ସେଥିରେ ସକଳ ରୋଗ ଏଠାରେ ନିର୍ଦ୍ୱନ୍ଦ୍ୱରେ ଅବସ୍ଥାନ କରି ପାରିବେ । ଜିଲ୍ଲାବୋର୍ଡ ଏବଂ ମ୍ୟୁନିସିପାଲିଟିର ଗୁଣଗାନ ନ କରିବା ବିଧେୟ । ଏ ସବୁ ଭିତରେ ଯେବେ ଉପଯୁକ୍ତ ଖାଦ୍ୟ ନ ମିଳେ, ତେବେ ଏ ସବୁ ରୋଗ ବିରୁଦ୍ଧରେ ସଂଗ୍ରାମ କରିବା ଲାଗି ମନୁଷ୍ୟର ଦେହରେ ଶକ୍ତି ଆସିବ କାହୁଁ ? ଫଳରେ ସବୁ ପ୍ରକାର ରୋଗ ମହାମାରି ବସା ବାନ୍ଧି ରହୁଛନ୍ତି ।

କେହି କେହି ଗାଲବାଦୀ କହନ୍ତି, ଦୁଃଖ ଦୁର୍ବିପାକ, ଅଭାବ ଅସୁବିଧା ସଙ୍ଗେ ସଂଗ୍ରାମ କଲେ ମାନବର ନୈତିକ ବଳ ଉନ୍ନତ ହୁଏ । କାହିଁ ଲକ୍ଷକେ କୋଟିକେ କେଉଁଠାରେ ଗୋଟିଏ ଅବା ହେଉଥିବ । ମାତ୍ର ଅଭାବ ଓ ଦାରିଦ୍ର୍ୟ ମଣିଷକୁ ଏପରି ନିଷ୍ପେଷିତ କରିଦିଏ ଯେ, ମୁଣ୍ଡ ଟେକି ଠିଆ ହେବା ପାଇଁ ମଧ୍ୟ ତା'ର ସାହସ ହୁଏ ନାହିଁ—ଆଉ ନୈତିକ ବଳ ତ ଦୂରର କଥା । ଖାଦ୍ୟାଭାବରେ ମନୁଷ୍ୟ ପଶୁତ୍ୱ ଆଚରଣ କରେ । ଦୁର୍ଭିକ୍ଷ ଅନାଟନ ବେଳେ ମା' ନିଜର ସନ୍ତାନକୁ ବିକ୍ରୟ କରିବାର ଦେଖାଯାଇଛି । ଏପରି କି ସନ୍ତାନକୁ ହତ୍ୟା କରି ତା'ର ମୁଖରୁ ଖାଦ୍ୟ ଛଡ଼ାଏ ବଳପୂର୍ବକ କାଢ଼ି ନେଇଛି । ଏଥିରେ ପୁଣି ନୈତିକତାର କଥା ଉତ୍ଥାପନ କରିବା ମଧ୍ୟ ବିଡ଼ମ୍ବନା । ୧୯୪୩ ମସିହାରେ ଲକ୍ଷ ଲକ୍ଷ ଲୋକ ଅନାଭାବରେ ପ୍ରପୀଡ଼ିତ ହେଲାବେଳେ ପ୍ରତିବାଦ ପର୍ଯ୍ୟନ୍ତ ତାଙ୍କ ମୁହଁରୁ ବାହାରିଲା ନାହିଁ । ଅବସ୍ଥାପନ୍ନ ଲୋକେ ବରଂ ଅନୁକମ୍ପା ଦେଖାଇ ସେମାନଙ୍କ ପାଇଁ ଆନ୍ଦୋଳନ କଲେ । ଗାଁ ଗହଳରେ ଧନୀକ ସମାଜପତିମାନେ ସମାଜ ଶୃଙ୍ଖଳା ନାମରେ ଯେଉଁ ବିଧାନ କରନ୍ତି, ସେ ସବୁ ଯେତେ ଅନ୍ୟାୟ, ଅସଙ୍ଗତ, ଅଶାନ୍ତିପୂର୍ଣ୍ଣ

ହେଲେ ଭୁଖା, ଦରିଦ୍ର ଅଭାବଗ୍ରସ୍ତ ଲୋକେ ତା'ର ପ୍ରତିବାଦ ପର୍ଯ୍ୟନ୍ତ କଅଣ କେବେହେଲେ କରି ପାରନ୍ତି ? ଅଭାବ, ପୁଣି ଭାତ ଗଣ୍ଡାକର ଅଭାବ ମଣିଷର ନୈତିକତା, ବଳ, ସାହସ, ହିତାହିତ ଜ୍ଞାନ ସମସ୍ତ ଧ୍ୱଂସ କରିଦିଏ । ପୃଥିବୀର ବହୁଭାଗ ଯେତେବେଳେ ଥିଲା ଅନ୍ଧକାରମୟ, ଭାରତବର୍ଷ ସେତେବେଳେ ସୃଷ୍ଟି କରିଥିଲା ଏକ ତୁଙ୍ଗ ସଭ୍ୟତା । ଅନାୟାସରେ ସେତେବେଳର ଅଳ୍ପ ଲୋକଙ୍କ ପାଇଁ ଏ ଦେଶ ଦେଇ ପାରୁଥିଲା ଯଥେଷ୍ଟ ଖାଦ୍ୟ । ଆଜି କିନ୍ତୁ ଏ ଅନାଟନ ସେ ପରମ୍ପରାକୁ ମଧ୍ୟ ମୂଳୋତ୍ପାଟନ କରିବାକୁ ବସିଲାଣି ।

---

## ସରକାର କରିଛନ୍ତି କ'ଣ ?

ଏଥିରେ ସରକାରଙ୍କର କରିବାର ଅଛି କ'ଣ ? ସରକାର କଅଣ ହଳ କରିବେ ନା ହଲ ବାଛିବେ ? ଏପରି ଜବାବ ଶହେ ବର୍ଷ ତଳେ ଦିଆଯାଉଥିଲା । ସେ ଯୁଗ ଆଜ ନାହିଁ । ସେ ମତିଗତି ବଦଳିଗଲାଣି । ସରକାର ଦୋକାନ ଖୋଲୁଛନ୍ତି, ରାସ୍ତାଘାଟ, ନାଳନର୍ଦ୍ଦମା ସଫା କରୁଛନ୍ତି, ଆଉ ଚାଷ କରି ପାରିବେ ନାହିଁ କାହିଁକି ? ଲୋକଙ୍କର ମଙ୍ଗଳ ପାଇଁ ଯାହା କିଛି ଆବଶ୍ୟକ, ସବୁ ସରକାରଙ୍କର କର୍ତ୍ତବ୍ୟ ।

ବିଲାତରୁ ଇଷ୍ଟଇଣ୍ଡିଆ କମ୍ପାନି ଆସିଥିଲା ଭାରତବର୍ଷରେ ବାଣିଜ୍ୟ ବ୍ୟବସାୟ କରିବାପାଇଁ । କାରବାର କରି ରୋଜଗାର କରିବା ଥିଲା ମତଲବ, ଅବସ୍ଥାଚକ୍ରରେ ଦେଶ-ଶାସନ-ଦାୟିତ୍ୱ ଆସି ମୁଣ୍ଡରେ ପଡ଼ିଲା । ଲୋକଙ୍କର ହିତାହିତ ଦୃଷ୍ଟି ବ୍ୟବସାୟୀ କମ୍ପାନିର ନ ଥିବା ସ୍ୱାଭାବିକ । ସିପାହୀ ବିଦ୍ରୋହ ପରେ ବ୍ରିଟିଶ୍ ସରକାର ଭାରତ-ଶାସନ ନିଜହାତରେ ନେଲେ । ଶାସନ-ପଦ୍ଧତିର ପରିବର୍ତ୍ତନ ହେଲା । ସେତେବେଳେ ସରକାରଙ୍କର ନୀତି ହେଲା, ଦେଶରେ କପରି ଶାନ୍ତି ଶୃଙ୍ଖଳା ରକ୍ଷା କରିବେ, ଶତ୍ରୁ ଆକ୍ରମଣରୁ ଦେଶକୁନିରାପଦ ରଖିବେ । ସେଥିଲାଗି ଯାହା କରିବା ଆବଶ୍ୟକ ସେଇ

ହେଲ୍ସ ସରକାରଙ୍କ କର୍ତ୍ତବ୍ୟ । ଲୋକେ ଖାଇବେ କ'ଣ, ପିନ୍ଧିବେ କ'ଣ, ଦେଶରେ କୃଷି ଶିଳ୍ପର ଉନ୍ନତି ହେବ କିପରି, ବାଣିଜ୍ୟ ବ୍ୟବସାୟ ପ୍ରସାର ଲାଭ କରିବ କିପରି, ଏ ସବୁ ସରକାରଙ୍କ କର୍ତ୍ତବ୍ୟ ଭିତରେ ଗଣାଡ଼ ହେଉ ନାହିଁ । ସରକାରଙ୍କର ନୀତି ହେଲା, ଏ ସବୁ ବିଷୟରେ ହସ୍ତକ୍ଷେପ କଲେ ଦେଶର ମଙ୍ଗଳ ହେବ ନାହିଁ, ତେଣୁ ଲୋକେ ତାଙ୍କର ନିଜେ ନିଜର ସବୁ ବ୍ୟବସ୍ଥା କରିବା ଉଚିତ । ଏଇ ନୀତି ବହୁବର୍ଷ ଧରି ଚାଲିଲା ।

୧୮୬୬ ମସିହାର ଓଡ଼ିଶା ନଅଙ୍କ ଦୁର୍ଭିକ୍ଷ କଥା ନ ଜାଣେ କିଏ ? ଓଡ଼ିଶା ଥିଲା ସେତେବେଳେ ବଙ୍ଗ ଦେଶର ଅନ୍ତର୍ଗତ । ରେଭେନ୍‌ସା ସାହେବ ଥିଲେ ଓଡ଼ିଶାର କମିସନର । ୧୮୬୫ ମସିହା ଶେଷବେଳକୁ ଅବସ୍ଥା ଗୁରୁତର ହୋଇ ଆସିଲା । ବଜାରରେ ଚାଉଳ ଦୁଷ୍ପ୍ରାପ୍ୟ । ଚାଉଳର ଦର ନିୟନ୍ତ୍ରଣ କରିବା କିମ୍ବା ବାହାରୁ ଖାଦ୍ୟଶସ୍ୟ ଆମଦାନିର ବ୍ୟବସ୍ଥା କରିବା କଥା ସରକାର ଉଚିତ ମନେ କଲେ ନାହିଁ, ଲୋକଙ୍କର ବାଣିଜ୍ୟ ବ୍ୟବସାୟରେ ହସ୍ତକ୍ଷେପ କରିବା ଅନୀତି ବୋଲି ସରକାର ଠିକ କଲେ । ରେଭେନ୍‌ସା ସାହେବ ଏଇ କଥା ସୁପାରିଶ୍ କଲେ । ପ୍ରାଦେଶିକ ସରକାର ସମ୍ମତି ଦେଲେ । ରେଭେନ୍‌ସା ବିସ୍ତୃତ ବିବରଣୀ ଦେଇ ଲେଖିଲେ, ଏ ଅବସ୍ଥା ଶୀଘ୍ର ଅପେ ଅପେ ସୁଧୁରି ଯିବ, ଏଥିପାଇଁ କିଛି କରିବା ଆବଶ୍ୟକ ନାହିଁ । ଅବସ୍ଥା କ୍ରମେ ଜଟିଳ ହୋଇ ଆସିଲା । ଦୁର୍ଭିକ୍ଷର ତାଣ୍ଡବ ଆରମ୍ଭ ହେଲା । ଏତିକିବେଳେ ରେଭେନ୍‌ସା ସାହେବ ଘସ୍ତରେ ବାହାରିଲେ । ଗଡ଼ଜାତମାନଙ୍କରେ ଦୁଇମାସରୁ ଅଧିକ କାଳ ଅତିବାହିତ କଲେ । ଅନାହାର ଯେତେବେଳେ ବ୍ୟାପିଲା, ଶହ ଶହ ମରି ଶୋଇଲେ, ସରକାର ସାହାଯ୍ୟର ବ୍ୟବସ୍ଥା କଲେ । କଟକ-ପୁରୀ ଆଉ କଟକ-ଗଞ୍ଜାମ ଦୁଇଟି ରାସ୍ତା ତିଆରିର ଯୋଜନା ହେଲା, ଲୋକଙ୍କୁ କାମ ଯୋଗାଇବା ପାଇଁ । ସୁପରିଣ୍ଟେଣ୍ଡିଂ ଇଞ୍ଜିନିୟର ସୁପାରିଶ କଲେ, ଚାଉଳ କିଣି ରଖି ଶ୍ରମିକମାନଙ୍କ ମଜୁରି ଦେବା ପାଇଁ । ସରକାର ରାସ୍ତା ଯୋଜନା ମଞ୍ଜୁର କଲେ; ମାତ୍ର ଚାଉଳ କିଣି ମଜୁରି ଦେବା ଇଞ୍ଜିନିୟରଙ୍କ ବିଭାଗର କାମ ନୁହେଁ ବୋଲି ନାମଞ୍ଜୁର କଲେ । ମୂଲିଆମାନେ ଟଙ୍କା

ନେବାପାଇଁ ସଜ୍ଜ ହେଲେ ନାହିଁ, ଚାଉଳ ଯେ ଦୁଷ୍ପ୍ରାପ୍ୟ । ୧୮୬୬ ମସିହା ସେପ୍ଟେମ୍ବର ମାସ ଶେଷ ପର୍ଯ୍ୟନ୍ତ ଚାଲିଲା ଭୀଷଣ ଦୁର୍ଭିକ୍ଷ, ଅନାହାର । ଆଜି ପର୍ଯ୍ୟନ୍ତ ନଅଙ୍କ ନାମ ପଢ଼ିଲେ ଲୋମ ଶିହରି ଉଠେ । ଓଡ଼ିଶାର ଏକ ଚତୁର୍ଥାଂଶରୁ ଅଧିକ ଲୋକ ଏହି ନଅଙ୍କରେ ପ୍ରାଣ ହରାଇଲେ ।

ସେତେବେଳେ ସରକାରଙ୍କର ଥିଲା ଏହି ନୀତି । ଏ ସବୁରେ ହସ୍ତକ୍ଷେପ କରିବା ସରକାର କର୍ତ୍ତବ୍ୟ ବୋଲି ମନେ କରୁ ନ ଥିଲେ । ଏହି ଓଡ଼ିଶା ଦୁର୍ଭିକ୍ଷଠାରୁ ସେ ନୀତିରେ ପରିବର୍ତ୍ତନ ହେଲା । କୃଷିର ଉନ୍ନତି ଲାଗି ବିଧାନ କରିବା ଆବଶ୍ୟକ, ଏ କଥା ସରକାର ବୁଝିଲେ । ଥରକୁ ଥର ଭିନ୍ନ ଭିନ୍ନ ସ୍ଥାନରେ ହେଲା ଦୁର୍ଭିକ୍ଷ । ଆଉ ଉଦାସୀନ ରହିବା ସମ୍ଭବ ହେଲା ନାହିଁ । ୧୮୮୪ ମସିହାରେ ସବୁ ପ୍ରଦେଶରେ କୃଷିବିଭାଗ ସ୍ଥାପିତ ହେଲା । କେତେ ଅଭାବ ଅସୁବିଧା ଭିତରେ ଏ ବିଭାଗ ଚାଲିଲା । ୧୯୨୦ ମସିହାରେ ପ୍ରଦେଶମାନଙ୍କରେ ପ୍ରଚଳିତ ହେଲା ଖଣ୍ଡ-ଦାୟିତ୍ୱ । ଆଉ ସେହିଦିନଠାରୁ ଏ କୃଷି ବିଭାଗ ଜଣେ ଲୋକପ୍ରତିନିଧି ମନ୍ତ୍ରୀଙ୍କ ଅଧୀନରେ ରଖାଗଲା । କୃଷି ବିଭାଗ ପ୍ରାଦେଶିକ ସରକାରଙ୍କଠାରେ ରହିଲା ସତ, ତଥାପି କେନ୍ଦ୍ର ସରକାର କୃଷିର ଉନ୍ନତି ପାଇଁ ନାନା ଗବେଷଣା-ଅନୁଷ୍ଠାନ ପ୍ରତିଷ୍ଠା କରିଛନ୍ତି । ପ୍ରଦେଶମାନଙ୍କୁ କୃଷି ବିଷୟରେ ଆବଶ୍ୟକ ନିର୍ଦ୍ଦେଶ ମଧ୍ୟ ଦିଅନ୍ତି । ପ୍ରଦେଶର କୃଷି ବିଭାଗ କୃଷି ବିଷୟରେ ପରିସଂଖ୍ୟା ସଂଗ୍ରହ କରନ୍ତି । ଭିନ୍ନ ଭିନ୍ନ ସ୍ଥାନରେ ସରକାରୀ ଫାର୍ମ୍‌ରେ ନାନା ଶସ୍ୟ ବିଷୟରେ ଗବେଷଣା କରନ୍ତି ଏବଂ ଗାଁ ଗହଳରେ କୃଷି ପ୍ରଚାର ମଧ୍ୟ କରନ୍ତି । ଏତେ ସବୁ ଉଦ୍ୟମ କରାଯାଉଛି ସତ, ମାତ୍ର ଏ ବିରାଟ ଦେଶର ବିରାଟ କୃଷି ସମସ୍ୟାର ସମାଧାନ ପାଇଁ ଏସବୁ ସମୁଦ୍ରକୁ ଶଙ୍ଖେ ପାଣି ପରି । ଅନ୍ୟ ପ୍ରଦେଶ ତୁଳନାରେ ପୁଣି ଓଡ଼ିଶାରେ କାମ ହୋଇଛି ଅଳ୍ପ । ୧୯୪୦-୪୧ ମସିହାରେ ଓଡ଼ିଶା ସରକାର ପ୍ରତି ହଜାରଜଣ ପିଛା ଏ ଦେଶରେ ମୋଟେ ୨୯ ଟଙ୍କା କୃଷି ବିଭାଗରେ ଖର୍ଚ୍ଚ କରିଥିଲେ । ସବୁ ପ୍ରଦେଶରୁ ଆମର ଏ ଖର୍ଚ୍ଚ ଅତି ଅଳ୍ପ । ସିନ୍ଧୁ ପ୍ରଦେଶରେ ହଜାର ପିଛା ୨୩୯ ଟଙ୍କା, ପଞ୍ଜାବରେ

୧୬୦, ଯୁକ୍ତ ପ୍ରଦେଶରେ ୧୪୮ । ଗତ ପାଞ୍ଚବର୍ଷର ସରକାର୍ ନୀତି ଯଥା-ସ୍ଥାନରେ ଆଲୋଚନା କରାଯିବ ।

ସବୁ ବ୍ୟବସାୟୀଙ୍କ ପରି ଦରିଦ୍ର କୃଷକର ମଧ୍ୟ ମୂଳଧନ ଆବଶ୍ୟକ । ସରକାର ସମବାୟ ବିଭାଗ ସ୍ଥାପନ କରି ଏ ମୂଳଧନ ଶସ୍ତା ଓ ସୁବିଧାରେ ଯୋଗାଇବାର ବନ୍ଦୋବସ୍ତ କଲେ, ମହାଜନ କବଳରୁ ଉଦ୍ଧାର ପାଇବାର ଏହା ପ୍ରକୃଷ୍ଟ ପନ୍ଥା । ଦେଶ ବିଦେଶରେ ସମବାୟ ଆନ୍ଦୋଳନ ଚମତ୍କାର ଫଳ ଦେଖାଇପାରିଛି । ମାତ୍ର ଏ ଭାରତଭୂମିରେ ଏ ଆନ୍ଦୋଳନ ସିଧା ସଳଖ ଭାବରେ ମୁଣ୍ଡ ଟେକି ଠିଆ ହୋଇ ପାରିଲା ନାହିଁ । ବିଶେଷତଃ ବଙ୍ଗ, ବିହାର ଆଉ ଆମର ଏ ଓଡ଼ିଶା ପ୍ରଦେଶରେ ଏକାବେଳକେ କରୁଣ୍ଡ ହୋଇ ପଡ଼ିଲା ।

ଏପରି ଭାବରେ ସରକାର ତାଙ୍କର ଉଦାସୀନ ବା ନିର୍ବିରୋଧ ନୀତି ପରିବର୍ତ୍ତନ କଲେ । କ୍ରମଶଃ କୃଷିବିଭାଗର କାର୍ଯ୍ୟକ୍ରମ ବଢ଼ିଲା । କୃଷିର ଉନ୍ନତି ବିଧାନ ପାଇଁ ଉଦ୍ୟମ ହେଲା । ୧୯୨୮ ମସିହାରୁ ଯେତେବେଳେ ପୃଥିବୀର ସବୁଆଡ଼େ ବ୍ୟବସାୟ ମାନ୍ଦା ପଡ଼ି ଗଲା, ଭାରତର ଅବସ୍ଥା ହେଲା ସବୁଠାରୁ ଖରାପ । କୃଷିଜାତ ଜିନିଷର ଦରଦାମ ଏକାବେଳକେ ଖସି ପଡ଼ିଲା । କୃଷକର ଜିନିଷ ବଜାରରେ ବିକି ହୋଇ ପାରିଲା ନାହିଁ । ଏତିକିବେଳେ ସରକାର ସହାୟତା ବିଶେଷ ଦରକାର । ଅନ୍ୟାନ୍ୟ ଦେଶରେ ସରକାର ବ୍ୟବସ୍ଥା କଲେ ଯେପରି ବିଦେଶରୁ ବେଶି ପରିମାଣରେ କୃଷି ଦ୍ରବ୍ୟ ଆସି ପାରିବ ନାହିଁ । ନିଜ ଦେଶର ଜିନିଷ ବାହାରରେ ବିକିବା ପାଇଁ ଉପାୟ ଖୋଜିଲେ । ଅନେକ ଖାଦ୍ୟଶସ୍ୟର ଉତ୍ପାଦନ ନିୟନ୍ତ୍ରଣ କଲେ । ନାନା ଉପାୟରେ କୃଷକର ସାହାଯ୍ୟ ପାଇଁ ଯତ୍ନ କଲେ । ଭାରତ ସରକାର ବୁଝିଲେ, ଏ ଦୁରବସ୍ଥା ପୃଥିବୀର ସବୁଆଡ଼େ । ଏଥିରେ ଆମ ଦେଶରେ କିଛି କରିବା ସମ୍ଭବ ନୁହେଁ । ଖାଲି ବିଦେଶୀ ଗହମ ଉପରେ ଟିକସ ବସିଲା । ଆଉ ଜାପାନରେ କିଛି ତୁଳା ବିକି ହେବାର ବ୍ୟବସ୍ଥା ହେଲା । ଆଠ ବର୍ଷ ଧରି ଭାରତର କୃଷକ ବଡ଼ ଅଘାତ ପାଇଲା ।

୧୯୩୭ ମସିହାରେ ମିଳଲା ପ୍ରାଦେଶିକ ସ୍ୱାଧୀନତା । ସେତେବେଳକୁ କୃଷକର ଅବସ୍ଥା ଅନେକ ପରିମାଣରେ ଭଲ ହୋଇ ଆସିଥିଲା । ଜିନିସର ଦର ଅଉ ମାନ୍ଦା ନ ଥିଲା । ଲୋକପ୍ରତିନିଧି ସରକାର କୃଷକର ହିତ ଲାଗି ନାନା ବ୍ୟବସ୍ଥାର ଉଦ୍ୟମ କଲେ । ଋଣର ସହଜ ପରିଶୋଧ ପାଇଁ ସୁଧର ହାର କମାଇବା ପାଇଁ ମହାଜନୀ ଆଇନ ଖଞ୍ଜିଲେ । ରୟତକୁ ଜମିରେ ଅଧିକ ଅଧିକାର ଦେବାପାଇଁ ପ୍ରଜାସ୍ୱତ୍ୱ ଆଇନ ପରିବର୍ତ୍ତନ କଲେ । ଏଥିରେ କୃଷକ ସମ୍ପ୍ରଦାୟର ବହୁମଙ୍ଗଳ ହେବ ବୋଲି କଳ୍ପନା କରାଯାଇଥିଲା । ମାତ୍ର ଦୁଃଖର କଥା, ସେ ସୁଫଳ ଫଳି ପାରିନାହିଁ । ଆଇନ କରାଯାଇଛି ସତ, ମାତ୍ର ପୂର୍ବ ଅବସ୍ଥାରେ କିଛି ପରିବର୍ତ୍ତନ ହୋଇ ପାରିନାହିଁ । ଆହୁରି କେତେ କଣ କରିବାକୁ ହେବ । କୃଷିର ଉନ୍ନତି ବିଧାନ ଲାଗି ଯାହା କିଛି ଆଜଯାଏ କରାଯାଇଛି, ସେ ଖାଲି ନଖରେ ମାଟିଖୋଳା ।

---

## ବ୍ୟାପକ ବ୍ୟବସ୍ଥା ଆବଶ୍ୟକ

ତା’ ପରେ ଆସିଲା ଏ ମହାଯୁଦ୍ଧ । ସାଙ୍ଗେ ସାଙ୍ଗେ ବ୍ୟବସାୟୀମାନେ ତତ୍ପର ହୋଇ ପଡ଼ିଲେ । ଜିନିଷର ଦରଦାମ ବଢ଼ିଲା । ସବୁ ଜିନିଷ ପରି କୃଷିଜାତ ଦ୍ରବ୍ୟର ମଧ୍ୟ ମୂଲ୍ୟ ବଢ଼ିଲା । ଦରଦାମ ବଢ଼ି ଚାଲିବାରୁ ସରକାର ଜିନିଷର ଦର ନିୟନ୍ତ୍ରଣ କରିବାର ବ୍ୟବସ୍ଥା କଲେ । ଏତେ ଦିନକେ କୃଷକର ଭାଗ୍ୟ ଟିକିଏ ଫିଟିଛି । ସେଥିରେ ଅନ୍ତରାୟ ହେବା ବିଜ୍ଞତାର କାର୍ଯ୍ୟ ହେବ ନାହିଁ । ଏ ଦୀର୍ଘ ଅନ୍ଧକାର ପରେ ସୌଭାଗ୍ୟ-ରବିର ଉଦୟ ହୋଇଛି । ଏଥିରେ ବାଧା ବିଘ୍ନ ସୃଷ୍ଟି କରିବା ଅନୁଚିତ । ଭାରତ ସରକାର ୧୯୩୯ ମସିହାରେ ଦରଦାମ ବିଷୟ ବିଚାର କରିବା ପାଇଁ ସମ୍ମିଳନୀ ଡାକିଲେ । ସେଥିରେ ସ୍ଥିର ହେଲା, କୃଷିଜାତ ଦ୍ରବ୍ୟର ଦରଦାମ ଉପରେ ହସ୍ତକ୍ଷେପ କରାଯିବ ନାହିଁ ।

ଜାପାନ୍ ଯୁଦ୍ଧରେ ପଶିଲା । ଶ୍ୟାମଦେଶ, ଇଣ୍ଡୋଚିନ୍, ବ୍ରହ୍ମଦେଶ ଅଧିକାର କଲା । ଜିନିଷର ମୂଲ୍ୟ ଘୋଡ଼ା ଦଉଡ଼ିଲା ପରି ବଢ଼ି ଚାଲିଲା । ଖାଦ୍ୟଦ୍ରବ୍ୟର ହେଲା ଅନାଟନ । ଇଉରୋପରେ ଜର୍ମାନୀ ଦେଶ ପରେ ଦେଶ ମାଡ଼ି ଚାଲିଲାବେଳେ କେତେ ଲୋକ ତାହାଁ ପଳାଇ ଆସିଲେ

ସେଥିରୁ ଅନେକ ପାଇଲେ ଅଶ୍ରୟ ଭାରତବର୍ଷରେ । ଶତ୍ରୁ ଦେଶରୁ କେତେ ପୁଣି ଯୁଦ୍ଧବନ୍ଦୀ ହୋଇ ଆସିଲେ ଏ ଦେଶକୁ । ଏ ସମସ୍ତଙ୍କୁ ଖାଦ୍ୟ ଯୋଗାଇବାକୁ ହେବ । ଯୁଦ୍ଧ ବିଭାଗ ପାଇଁ ପ୍ରଚୁର ଖାଦ୍ୟ ଲୋଡ଼ା । ଆମ ଦେଶର ବହୁଲୋକ ନାନାଭାବରେ ଯୁଦ୍ଧରେ ଯୋଗ ଦେଲେ । ସୈନ୍ୟ ବିଭାଗରେ ଯୋଗ ଦେଇ ସେମାନଙ୍କୁ ଖାଇବାକୁ ମିଳିଲା ପ୍ରଚୁର । ଦରମା ମଧ୍ୟ ମିଳିଲା ବେଶୀ । ତେଣୁ ସେମାନଙ୍କର ପରିବାରରେ ଲୋକଙ୍କୁ ଖାଇବାପାଇଁ ଅଧିକ ମିଳିବାର କଥା । ଏତେ ପରିମାଣରେ ଖାଦ୍ୟ ତାଙ୍କ ଭାଗ୍ୟରେ କେବେ ଜୁଟି ନଥିଲା । ତେଣେ ପୁଣି ଜାପାନ ଅଧିକାର କଲା ବ୍ରହ୍ମଦେଶ । ଆଉ ଚାଉଳ ଆମଦାନି ସମ୍ଭବ ହୋଇପାରିଲା ନାହିଁ । ସବୁଆଡ଼େ ଖାଦ୍ୟର ଅନାଟନ । ସରକାର ଅଜସ୍ର ନୋଟ ପ୍ରଚଳନ କରି ଚାଲିଲେ । ଦରଦାମ କ୍ଷିପ୍ର ଗତିରେ ବଢ଼ି ଚାଲିଲା । ହତଭାଗ୍ୟ ଦେଶ । ଏଡିକି ବେଳକୁ କାହିଁଥିଲା ପୁଣି ଝଡ଼ ତୋଫାନ ।

ପ୍ରାଦେଶିକ ସରକାର ନାନାଉପାୟରେ ଖାଦ୍ୟଦ୍ରବ୍ୟ ନିୟନ୍ତ୍ରଣ କରିବା ଲାଗି ବ୍ୟବସ୍ଥା କଲେ । ଭିନ୍ନ ପ୍ରଦେଶରେ ଭିନ୍ନ ନୀତି । କାହାର ସଙ୍ଗେ କାହାର ସମ୍ପର୍କ ନାହିଁ—ସହଯୋଗ ନାହିଁ । କେଉଁଠାରେ ଯଥେଷ୍ଟ ଖାଦ୍ୟ ଅଛି, କେଉଁଠାରେ ଅବସ୍ଥା ଶୋଚନୀୟ । ପ୍ରଦେଶ ପ୍ରଦେଶ ଭିତରେ ସନ୍ଦେହ, ଅବିଶ୍ୱାସ । ଅବସ୍ଥା ଅତି ଜଟିଳ ହୋଇ ଉଠିଲା । କୌଣସି ବ୍ୟବସ୍ଥା ସୁଚାରୁରୂପେ କାର୍ଯ୍ୟକାରୀ ହୋଇ ପାରିଲା ନାହିଁ । ବଙ୍ଗଳା ଦୁର୍ଭିକ୍ଷ ବେଳେ ଦିଲ୍ଲୀରୁ ଜବାବ ମିଳିଲା, ଖାଦ୍ୟ ଯୋଗାଇବାର ଦାୟିତ୍ୱ ପ୍ରଦେଶର । ପ୍ରଦେଶରେ ଲୋକପ୍ରତିନିଧି ସରକାର । ସେମାନଙ୍କର ଏ ଦାୟିତ୍ୱ ତୁଲେଇବା ଉଚିତ । ଏ ଜବାବ ଦେଇ ମୁଣ୍ଡରୁ ଦାୟିତ୍ୱ ଖସାଇ ଦେବା ବେଶିଦିନ ସମ୍ଭବ ହେଲା ନାହିଁ । ଶେଷରେ କେନ୍ଦ୍ର ସରକାର ପୁଣି ବାହାରିଲେ ସମାଧାନ କରିବା ପାଇଁ । ଯୋଗାଣ ସରବରାହ ଇତ୍ୟାଦି ସମସ୍ତ କେନ୍ଦ୍ର ସରକାରଙ୍କ ନିର୍ଦ୍ଦେଶ କ୍ରମେ ଭାରତସାରା କାର୍ଯ୍ୟକାରୀ ହେଲା । ଖାଦ୍ୟ ଯୋଜନା ସମ୍ପର୍କରେ

ଏଥିକି ଅନ୍ତତଃ ଭାରତବର୍ଷ ଶିକ୍ଷା ଲାଭ କରିଛି ଯେ, ଏ ଦେଶକୁ ଏକ ଅଖଣ୍ଡ ରାଜ୍ୟ ବୋଲି ଗ୍ରହଣ ନ କଲେ, ସାରା ଭାରତବର୍ଷ ପାଇଁ ଏକ ବ୍ୟାପକ ବ୍ୟବସ୍ଥା ନ ହେଲେ ଅନ୍ତତଃ ଅର୍ଥନୈତିକ ସମସ୍ୟାର ସମାଧାନ ଅତି ଦୁରୂହ ହୋଇ ପଡ଼ିବ ।

ଏଇ ଖାଦ୍ୟ ସମସ୍ୟାର ସମାଧାନ ପାଇଁ ବିଲାତ ସରକାର ତାଙ୍କ ଦେଶରେ କରିଛନ୍ତି କ'ଣ ? କେତେ ପଡ଼ିଆ ଜମି ଅବାଦୀ କରାଯାଇଛି । ଅବାଦୀ ଜମିରେ ବହୁତ ବେଶି ଫସଲ ଅଦାୟ କରାଯାଇଛି । ସାର, ଜଳସେଚନ ପ୍ରଭୃତିର ବ୍ୟବସ୍ଥା କରାଯାଇ ବିଲାତର ଖାଦ୍ୟ-ସମ୍ପଦ ବହୁପରିମାଣରେ ବଢ଼ି ଯାଇଛି । ଯୁଦ୍ଧ ଆରମ୍ଭରୁ ସରକାର ସ୍ଥିର କଲେ-ସାତବର୍ଷ ଧରି ପଡ଼ିଆ ପଡ଼ିଥିବା ଏକ ଏକର ଜମି ଚାଷ କଲେ ସରକାର ଦୁଇ ପାଉଣ୍ଡ ଲେଖାଏଁ ସାହାଯ୍ୟ ଦେବେ । ଇଂଲଣ୍ଡ ପରି ଏତେ କ୍ଷୁଦ୍ର ଦେଶରେ ୧୯୪୧ ମସିହା ବେଳକୁ ୬୦ ଲକ୍ଷ ଏକର ଜମି ଅବାଦୀ ହୋଇ ପାରିଲା । ଜମିରେ ସାର ଦେବାପାଇଁ, କଳ ଲଙ୍ଗଳ ପ୍ରଭୃତି ବ୍ୟବହାର କରିବାପାଇଁ ମଧ୍ୟ ଯଥାର୍ଥ ସାହାଯ୍ୟ ମିଳିଲା । ଏସବୁ କରିବା ଫଳରେ ଯୁଦ୍ଧ କାଳ ଭିତରେ ଶତକରା ପ୍ରାୟ ୪୫ ଭାଗ ଅଧିକ ଜମିରେ ଚାଷ କରାଯାଇଛି ଏବଂ ଖାଦ୍ୟ-ଶସ୍ୟର ପରିମାଣ ଦେଢ଼ଗୁଣରୁ ଅଧିକ ହୋଇ ଯାଇଛି । ଖାଲି ଖାଦ୍ୟ-ଶସ୍ୟ ନୁହେଁ, ଯୁଦ୍ଧ ପୂର୍ବରୁ ବିଲାତରେ ଯାହା ଦୁଧ ଏବଂ ମାଂସ ଉତ୍ପନ୍ନ ହେଉଥିଲା, ଯୁଦ୍ଧ କାଳ ମଧ୍ୟରେ ତା'ର ପରିମାଣ ମଧ୍ୟ ଅନେକ ଅଧିକ ହୋଇ ପାରିଲା ।

ଆମ ଦେଶର କଥା । ଯୁଦ୍ଧ କାଳର ପ୍ରଥମ ଚାରିବର୍ଷ ମଧ୍ୟରେ କୌଣସି ବ୍ୟାପକ ବ୍ୟବସ୍ଥା କରାଯାଇ ପାରିଲା ନାହିଁ । କେବଳ ସ୍ଥାନେ ସ୍ଥାନେ ଦରଦାମ ଧାର୍ଯ୍ୟ କରିବାପାଇଁ ଉଦ୍ୟମ ମାତ୍ରହୋଇଥିଲା । ବ୍ୟବସ୍ଥା କରା ଯାଇଥିଲେ, ୧୯୪୨ରେ ଦୁର୍ଭିକ୍ଷ ଏପରି ଭୀଷଣ ଆକାର ଧରି ନ ଥାନ୍ତା । ଏଇ ଦୁର୍ଭିକ୍ଷ ଘଟଣାରୁ କେନ୍ଦ୍ରସରକାରଙ୍କ ନିର୍ଦ୍ଦେଶ ଅନୁସାରେ

ନାନାପ୍ରକାର ବ୍ୟବସ୍ଥା ଆରମ୍ଭ କରି ଯାଇଛି, ଖାଦ୍ୟ ବିଭାଗ ଏବେ ସରକାରଙ୍କର ଗୋଟିଏ ମୁଖ୍ୟ ବିଭାଗ। ଉପସ୍ଥିତ ଅନାଟନ ମୋଚନ ଲାଗି ଏ ସବୁ ଉଦ୍ୟମ। ମାତ୍ର ଏସବୁ ଖାଲି ସାମୟିକ ବ୍ୟବସ୍ଥା ନୁହେଁ। ଖାଦ୍ୟ ସମସ୍ୟାକୁ ଆଉ ଆମର ସାମୟିକ ସମସ୍ୟା ବୋଲି ଧରି ନେବାର ସମୟ ନାହିଁ। ଏ ଖାଦ୍ୟ ବିଭାଗ ଏକ ସ୍ଥାୟୀ ଅନୁଷ୍ଠାନ ହେବ ଏବଂ ଖାଦ୍ୟସମସ୍ୟାର ସ୍ଥାୟୀ ପ୍ରତିକାର ଲାଗି ବ୍ୟବସ୍ଥା କରାଯିବ ବୋଲି ଆଶା କରାଯାଏ।

---

# ଅଧିକ ଶସ୍ୟ ଉତ୍ପାଦନ

ଦୁଇଟି କଥା । ଖାଦ୍ୟ ଆମର ଅଭାବ । ଯେ କୌଣସି ଉପାୟରେ ଅଧିକ ଖାଦ୍ୟ ଅଯୋଜନ କରିବାକୁ ହେବ । ଖୋଜି ବୁଲି ବିଦେଶରୁ ବର୍ତ୍ତମାନ ପାଇଁ ଖାଦ୍ୟ-ଦ୍ରବ୍ୟ ସଂଗ୍ରହ କରିବା ଏକାନ୍ତ ଆବଶ୍ୟକ । ମାତ୍ର ଦେଶ ଭିତରେ ପ୍ରଚୁର ଖାଦ୍ୟର ଉତ୍ପାଦନ ପାଇଁ ବନ୍ଦୋବସ୍ତ କରିବାକୁ ହେବ, ଦ୍ୱିତୀୟ କଥା—ଏ ଖାଦ୍ୟ ଯେପରି ସମସ୍ତ ଦେଶବାସୀଙ୍କ ଉପଯୁକ୍ତ ପରିମାଣରେ ମିଳି ପାରିବ, ସେ ବନ୍ଦୋବସ୍ତ କରିବା ମଧ୍ୟ ପ୍ରୟୋଜନ । ଦେଶ ଭିତରେ ପ୍ରଚୁର ଖାଦ୍ୟ ମହଜୁତ୍ ରହିଲେ ସମସ୍ତଙ୍କ ଦୁଃଖ ଅପେ ଅପେ ଘୁଞ୍ଚିଯିବ ନାହିଁ ।

ତେବେ ପ୍ରଥମ କଥା, ଖାଦ୍ୟର ଅଯୋଜନ । ଭାରତ ସରକାର ୧୯୪୨ ଅପ୍ରେଲ ମାସରେ ଏକ ସମ୍ମିଳନୀ ଡାକିଲେ । ସବୁ ପ୍ରଦେଶରୁ ଆଉ ଦେଶୀୟ ରାଜ୍ୟମାନଙ୍କରୁ ପ୍ରତିନିଧିମାନେ ଯୋଗ ଦେଲେ । ଦେଶରେ ଖାଦ୍ୟର ଅବସ୍ଥା ଦେଖି ସମ୍ମିଳନୀ ଉଦ୍‌ବେଗ ପ୍ରକାଶ କଲେ, ଆଉ ସୁପାରିଶ କଲେ, ନିର୍ଦ୍ଦିଷ୍ଟ ବିଧାନ କରି ଦେଶ ଭିତରେ ଯେପରି ଅଧିକ ଖାଦ୍ୟ ଉତ୍ପାଦନ କରି ଯାଇପାରିବ, ସେ ବନ୍ଦୋବସ୍ତ କରୁର

ଅବଶ୍ୟକ । ସେଥି ଦିନଠାରୁ କେନ୍ଦ୍ର ସରକାର ପ୍ରାଦେଶିକ ଆଉ ଦେଶୀୟ ରାଜ୍ୟର ସରକାରମାନେ ଲାଗି ପଡ଼ି ଆନ୍ଦୋଳନ ଚଳାଇଛନ୍ତି—ଅଧିକ ଖାଦ୍ୟ ଉତ୍ପାଦନ କର । ଏଥିପାଇଁ ଭାରତ ସରକାର ପ୍ରଚୁର ଅର୍ଥ ସାହାଯ୍ୟ କରିଛନ୍ତି । କେତେକ ସେଥି ମଧ୍ୟରୁ ଦାନ, ଆଉ କେତେକ ଋଣ ।

ଅଧିକ ଶସ୍ୟପାଇଁ ଅଧିକ ଜମି ଦରକାର । ପୂର୍ବେ କୁହାଯାଇଛି ଏ ଦେଶରେ ପ୍ରଚୁର ଜମି ଅନାବାଦୀ ପଡ଼ି ରହିଛି । ସେ ସବୁ ଖାଲି ଅକର୍ମ-ଣିଳା ନୁହେଁ । ସେଥିରୁ ବହୁତ ଜମିରେ ଚାଷ କରି ଯାଇପାରିବ । ସେସବୁ ଆବାଦୀ କରିବାପାଇଁ ସରକାର ବିନା ସୁଧରେ ଋଣ ଦେଉଛନ୍ତି । ଏପରି ଜମି କିଛିକାଳ ପାଇଁ ବିନା ଖଜଣାରେ ପଟ୍ଟା ଦିଆଯିବାର ବନ୍ଦୋବସ୍ତ ହୋଇଛି, ଶସ୍ତାରେ ପାଣି ଯୋଗାଇବାର ସୁବିଧା କରାଯାଇଛି । ପ୍ରକାଶ ଯେ, ଓଡ଼ିଶାରେ ଏପରି ଭାବରେ ପ୍ରାୟ ଏକ ଲକ୍ଷ ଏକର ଜମି ଆବାଦ କରାଗଲାଣି । ଏ କୃଷିସମ୍ବଳ-ଦେଶରେ ଏତେ ଭୂମି ଅନାବାଦୀ ପଡ଼ି ରହିବା ମହାପାପ । ଯେତେ ସମ୍ଭବ ଉପଯୋଗୀ ଜମିରେ ଶସ୍ୟ ଉତ୍ପନ୍ନ କରାଇବା ଅବଶ୍ୟକ । ମାତ୍ର ଗୋଟିଏ ବିଷୟପ୍ରତି ଆରମ୍ଭରୁ ଦୃଷ୍ଟି ପଡ଼ିବା ଉଚିତ । ଏ ଯେଉଁ ନୂଆ ଜମି ଆବାଦୀ କରାଯାଉଛି, ଏଥିରେ ନିର୍ଦ୍ଦିଷ୍ଟ ଯୋଜନା ରହିବା ଅବଶ୍ୟକ । କେଉଁଠାରେ କେତେ ପରିମାଣରେ ଜମି ଭାଙ୍ଗିବାକୁ ହେବ, ସେଥିରେ ଅନିଷ୍ଟର କୌଣସି ସମ୍ଭାବନା ନାହିଁ ତ ? ପୁଣି ଏ ଯେଉଁ ନୂଆ ଜମି ଆବାଦୀ କରାଯିବ ସେ ସବୁ ଚାଷୀ-ମାନଙ୍କ ହାତରେ ପଡ଼ିବ ନା ମହାଜନ ବ୍ୟବସାୟୀମାନେ ସେ ସବୁର ଅଧୀଶ୍ୱର ହୋଇ ବସିବେ । ଏ ସବୁ ବିଷୟରେ ଉପଯୁକ୍ତ ବିଧାନ ନ ହେଲେ କୃଷିର ଭବିଷ୍ୟତ ହିତକର ହୋଇ ପାରିବ ନାହିଁ ।

ଆମ ଦେଶରେ, ବିଶେଷତଃ ଓଡ଼ିଶାରେ ଜମିରୁ ଏକାଧିକ ଫସଲ ଉତ୍ପନ୍ନ କରିବାଲାଗି ବିଶେଷ ଉଦ୍ୟମ କରାଯାଇ ନାହିଁ । ଖାଲି ଜମିର ପରିମାଣ ବେଶି ହେଲେ ଖାଦ୍ୟର ଅନାଟନ ଘୁଞ୍ଚିଯିବ ନାହିଁ । ଜମିରୁ ଏକ

ରୁଷିଆରେ କେତେକ ସ୍ଥାନରେ ଏକା ଜମିରେ ବର୍ଷରେ ଦୁଇଥର ଗହମ ଉତ୍ପନ୍ନ କରାଯାଏ । ଅଧିକ ଜମି ଦୋଫସଲ କରିବାପାଇଁ ଏବେ ଯତ୍ନ କରାଯାଉଛି । ରବି ଫସଲ ଓ ପନିପରିବାର ଦାମ ଖୁବ୍ ବଢ଼ିଥିବାରୁ ଚାଷୀମାନେ ବିଶେଷ ଲାଭ ଆଶାରେ ଏ ଦିଗରେ କିଛି ଉଦ୍ୟମ କରୁଛନ୍ତି । ଜମିରେ ଏକାଧିକ ଫସଲ ଉଠାଇବାକୁ ହେଲେ ପାଣିର ସୁବିଧା ଆବଶ୍ୟକ ଏବଂ ପ୍ରଚୁର ସାର ମଧ୍ୟ ମିଳିବା ପ୍ରୟୋଜନ । ପୁଣି ପ୍ରଶସ୍ତ ଗଣ୍ଡିର ମଧ୍ୟରେ ଯାହାର ମାଣେ ଗୁଣ୍ଠେ ଜମି, ସେଥିରେ ସେ ବର୍ଷ ଭିତରେ ଭିନ୍ନ ଭିନ୍ନ ଫସଲ କରିବାପାଇଁ ସାହସ କରିବ କିପରି ?

ଜମିପାଇଁ କିପରି ଭାବରେ କି ପ୍ରକାର ସାର ଯୋଗାଇବା ଆବଶ୍ୟକ, ସେ ବିଷୟରେ ଏବେ ବହୁ ଆଲୋଚନା ଚାଲିଛି । ଅଧିକ ଖାଦ୍ୟ ଉତ୍ପାଦନ ପାଇଁ ଯେଉଁ ଆନ୍ଦୋଳନ ଆରମ୍ଭ ହୋଇଛି, ଏ ତା'ର ଏକ ବିଶିଷ୍ଟ ଅଙ୍ଗ । ଗୋବର ଖତ ଜାଳରୂପେ ବ୍ୟବହାର ନ କରି ଜମିରେ ଲଗାଇବା ପାଇଁ ବହୁଦିନ ଉପଦେଶ ଦିଆଯାଇଛି । ମାତ୍ର ସେଥିରେ କୌଣସି ଫଳ ହେଲା ପରି ଜଣାଯାଉ ନାହିଁ । ଶସ୍ତାରେ ଏବଂ ସୁବିଧାରେ ଜାଳିବା ପାଇଁ ଅନ୍ୟ କିଛି ନ ମିଳିଲେ ଦରିଦ୍ର ଲୋକେ ଗୋବର ଶୁଖାଇ ଜାଳରୂପେ ନିଶ୍ଚୟ ବ୍ୟବହାର କରିବେ । ତେଣୁ ସାର ହିସାବରେ ଗୋବର ଉପାଦେୟ— ଏ ଉପଦେଶ କାର୍ଯ୍ୟକାରୀ ହେବ କିପରି ? ହାଡ଼ଗୁଣ୍ଡି ସାରରୂପେ ବ୍ୟବହାର କରିବା ପାଇଁ ଉଦ୍ୟମ୍ ହୋଇଛି । ମାତ୍ର ତା'ର ପରିମାଣ ଏତେ ଅଳ୍ପ ଯେ, ସେ କଥା ଉଲ୍ଲେଖ କରିବାର ଅଯୋଗ୍ୟ । କେତେକ ସହରରେ ମଇଳାରୁ ଖତ ଉତ୍ପନ୍ନ କରିବାପାଇଁ ଉଦ୍ୟମ ହେଉଛି । ପିଡ଼ିଆ ସାର ପ୍ରଚଳନ ପାଇଁ ମଧ୍ୟ ପ୍ରଚାର କରାଯାଉଛି । କୃତ୍ରିମ ସାର ପ୍ରସ୍ତୁତ କରିବା ପାଇଁ ମଧ୍ୟ ଆଲୋଚନା ଚାଲିଛି । ଏସବୁ କିନ୍ତୁ ଏ ପର୍ଯ୍ୟନ୍ତ ଖାଲି ଉଦ୍ୟମ ଅବସ୍ଥାରେ ଅଛି । ସ୍ଥାନ ବିଶେଷରେ ଯାହା କିଛି କରାଯାଉଛି, କେବଳ ପରୀକ୍ଷା ସ୍ୱରୂପ । ଏ ସବୁ ଦିଗରେ ପ୍ରକୃତ ପକ୍ଷରେ କୃଷିର ଉନ୍ନତି ପାଇଁ ବିଶେଷ କିଛି କରାଯାଇ ନାହିଁ ।

ଫସଲ ଅମଳ ହେଉଥିବେଳେ କୃଷକ ଅପଣା ପସନ୍ଦ ଅନୁସାରେ ଅସନ୍ତା ବର୍ଷପାଇଁ ବିହନ ବାଛି ରଖେ । କାଳ କାଳ ହେଲା ଏହି ରୀତି ଚଳି ଆସୁଛି । ଉପଯୁକ୍ତ ଧରଣର ବିହନ ହେଲେ ଫସଲ ଶତକଡ଼ା ଦଶଗୁଣ ପର୍ଯ୍ୟନ୍ତ ଅଧିକ ହୋଇ ପାରିବ । ମାତ୍ର ସେ ସମ୍ବନ୍ଧରେ ସାଧାରଣ କୃଷକ ପକ୍ଷରେ କୌଣସି ଗବେଷଣା କରିବା ସମ୍ଭବ ନୁହେଁ । ଏଥିପାଇଁ ବହୁକାଳ ପରୀକ୍ଷା ଆବଶ୍ୟକ । ପୁଣି କେଉଁ ସ୍ଥାନରେ କି ପ୍ରକାର ବିହନ ଉପଯୁକ୍ତ, ସେ କଥା ମଧ୍ୟ ବିଚାର କରିବାକୁ ହେବ । ଯେଉଁଠାରେ ବନ୍ୟା ବିପତ୍ତି ବେଶି, ସେଠାରେ ଯେ ପ୍ରକାର ଗଛ ବନ୍ୟାର ତୋଡ଼ ସମ୍ଭାଳି ରହି ପାରିବ, ସେ ଅନୁଯାୟୀ ବିହନ ବୁଣିବାକୁ ହେବ । ଏସବୁ ଦିଗରେ ଯଥେଷ୍ଟ କାମ କରିବା ଆବଶ୍ୟକ ।

ଖାଦ୍ୟର ଅଭାବ । ଏତେବେଳେ ଏତେ ଜମିରେ କପା, ଝୋଟ, ଧୂଆଁପତ୍ର ନ କରି ଖାଦ୍ୟ ଉତ୍ପନ୍ନ କରିବା ଉଚିତ । ଏ କଥା ଯେ କେହି ସହଜରେ କହିବେ । ଅମ କପା ବାହାରେ ବଜାର ଖୋଜି ପାଉ ନାହିଁ; ଅଯଥା ଏତେଗୁଡ଼ାଏ କପା ଲଗାଇ କି ଲାଭ ? ଝୋଟର ବଜାର ମାନ୍ଦା; ଝୋଟ ଚାଷ କମାଇଦେବା ଉଚିତ । କପା ଜମିରେ କପା ନ କରି ଖାଦ୍ୟ ଉପୁଜାଇବା ପାଇଁ ସରକାର ବିନା ମୂଲ୍ୟରେ ବା ଅତି ଅଳ୍ପ ମୂଲ୍ୟରେ ବିହନ ଏବଂ ସାର ଦେବାର ବନ୍ଦୋବସ୍ତ କଲେ । ଚାଉଳର ମୂଲ୍ୟ ବଢ଼ିବାରୁ ବିହାର ଓ ବଙ୍ଗଳାରେ ଅନେକ ଝୋଟ ଜମିରେ ଧାନ ଫସଲ ହେଲା । ଦେଶରେ ପ୍ରଚୁର ଖାଦ୍ୟ ନ ଥାଇ ଏସବୁ ଅନ୍ୟାନ୍ୟ ଫସଲ କରିବା ବାଞ୍ଛନୀୟ ନୁହେଁ । ସାମୟିକ ସମସ୍ୟାର ସମାଧାନ ଲାଗି ଏ ବ୍ୟବସ୍ଥା ଯଥାର୍ଥ । ମାତ୍ର ଯେତେବେଳେ ଖାଦ୍ୟଦ୍ରବ୍ୟର ଦର ଖସି ଆସିବ, କପା, ଝୋଟ ଧୂଆଁପତ୍ର ଅପେକ୍ଷାକୃତ ଅଧିକ ଲାଭଜନକ ହୋଇ ପଡ଼ିବ, ସେତେବେଳେ ବାଧ୍ୟତାମୂଳକ ବ୍ୟବସ୍ଥା କରି କପା, ଝୋଟ ପରିବର୍ତ୍ତରେ ଧାନ, ଗହମ ଉତ୍ପନ୍ନ କରିବା ବୁଦ୍ଧିମତାର କାର୍ଯ୍ୟ ହେବ ନାହିଁ । ବନ୍ଧ ବାନ୍ଧି ପାଣିର ପ୍ରାକୃତିକ ସ୍ରୋତ ବନ୍ଦ କରିବା ସବୁକାଳେ ସବୁଠାରେ ସୁଫଳଦା ହୋଇ ନ

ପାରେ । ଗୁଡ଼ଲ ଗହ୍ମ ପ୍ରଭୃତିର ମୂଲ୍ୟ ଏପରି ଭାବରେ ବରାବର ନିୟନ୍ତ୍ରଣ କରିବାକୁ ହେବ, ଯହିଁରେ ଖାଦ୍ୟ-ଫସଲହିଁ କୃଷକ ପକ୍ଷରେ ଲାଭଜନକ ହେବ । ସେପରି ନ ହେଲେ ଅଧିକ ଖାଦ୍ୟ ଉତ୍ପନ୍ନ କରିବା ସମ୍ଭବ ହୋଇପାରିବ ନାହିଁ ।

ଚାଷର ପରମ ସାଥୀ ପାଣି । ଭାରତବର୍ଷର ଅନେକ ଅଞ୍ଚଳରେ ଯଥେଷ୍ଟ ବର୍ଷା ହୁଏ ନାହିଁ କିମ୍ବା ଯାହା ହୁଏ ସେ ଅତି ଅନିଶ୍ଚିତ । ଅନାବାଦୀ ଜମି ଆବାଦୀ କରିବା ପାଇଁ କିମ୍ବା ଜମିରେ ଏକାଧିକ ଫସଲ ଉଠାଇବା ପାଇଁ ଏକାନ୍ତ ଆବଶ୍ୟକ ଜଳ-ସେଚନର ବ୍ୟବସ୍ଥା । ସେ ବ୍ୟବସ୍ଥା ହୋଇ ପାରିଲେ ନିରାଟ ମରୁଭୂମି ଶ୍ୟାମଳ-ଶସ୍ୟ-ସମ୍ଭାରରେ ପରିପୂର୍ଣ୍ଣ ହୋଇଯିବ । ପଞ୍ଜାବ ଏବଂ ସିନ୍ଧୁପ୍ରଦେଶର ଶସ୍ୟସମ୍ପଦ ଖାଲି କେନାଲ ପାଣି ଲାଗି । ଜାଣିବା ଲୋକଙ୍କ ମତରେ ଖାଲି ଉପଯୁକ୍ତ ଜଳ-ସେଚନର ବ୍ୟବସ୍ଥା କରାଯାଇ ପାରିଲେ, ଭାରତର ଶସ୍ୟ-ସମ୍ପଦ ଦେଢ଼ ଗୁଣ ହୋଇ ପାରିବ ।

ଓଡ଼ିଶାରେ ୭୧ ଲକ୍ଷ ଏକର ଜମିରେ ଚାଷ ହୁଏ । ସେଥି ମଧ୍ୟରୁ କେନାଲ ପାଣି ପାଏ ପ୍ରାୟ ୩ ଲକ୍ଷ ଏକର । କୂଅ, ପୋଖରୀ, ବନ୍ଧ ପ୍ରଭୃତିରୁ ପାଣି ମିଳିବାର ସୁବିଧା ଅଛି ଆହୁରି କିଛି ଜମିରେ । ଏସବୁ ହିସାବ କରି ଦେଖିଲେ ଶତକଡ଼ା ପ୍ରାୟ ୨୦ ଏକର ଜମିରେ କୌଣସି-ମତେ ପାଣି ମିଳିବାର ସୁବିଧା ଅଛି, ମାତ୍ର ଏ ହତଭାଗ୍ୟ ଦେଶରେ ଜଳବଢ଼ିରେ ଭାସି ବୁଡ଼ିଯାଇ ଧୋଇ ନ ଗଲେ ମରୁଡ଼ିର ସମ୍ଭାବନା ଖରି ବେଶି । ବର୍ଷା ଆମରି ଅନିୟମିତ । ତେଣୁ ଜଳସେଚନ ଲାଗି ନାନା ବ୍ୟବସ୍ଥା ନ କଲେ ଆଉ ଉପାୟ ନାହିଁ ।

ଅଧିକ ଶସ୍ୟ ଲାଗି ଯେଉଁ ଆନ୍ଦୋଳନ ହେଉଛି, ଏଥିରେ ପାଣି ଯୋଗାଇବା ପାଇଁ ବ୍ୟବସ୍ଥା କରାଯାଉଛି । କୂଅ ପୋଖରୀ ଖୋଳାଇବା ପାଇଁ ଟଙ୍କା ସାହାଯ୍ୟ ମିଳୁଛି । ଯେଉଁସବୁ କେନାଲ ଅଛି, ସେଥିରୁ ଅଧିକ

ଜମିରେ ଯେପରି ପାଣି ମିଳି ପାରିବ ତା'ର ବ୍ୟବସ୍ଥା କରାଯାଉଛି । ଟିଉବ୍ କୂଅ ବସାଇ ମଧ୍ୟ ପାଣି ମିଳିବାର ଉଦ୍ୟମ କରାଯାଉଛି । କୋଟି କୋଟି ଟଙ୍କାର ଯୋଜନା କରାଯାଇଛି, ପାଣି ଯୋଗାଇବା ପାଇଁ । ମାତ୍ର ଏ ପର୍ଯ୍ୟନ୍ତ ଯାହା କରାଯାଇଛି, ସେ ଖୁବ୍ ବେଶୀ ବୋଲି କୁହାଯାଇ ନ ପାରେ । ପଞ୍ଜାବ ପ୍ରଦେଶରେ ହୋଇଛି ସବୁଠାରୁ ବେଶୀ ।

ଏ ସବୁ ଖାଲି ସାମୟିକ ବ୍ୟବସ୍ଥା ଭାବରେ କରାଯାଇଛି ବୋଲି ବୋଧହୁଏ । ବର୍ତ୍ତମାନ ଉତ୍କଟ ଖାଦ୍ୟ-ସଙ୍କଟ । ଏଥିରୁ ପରିତ୍ରାଣ ପାଇବା ପାଇଁ ଏ ସବୁ ଜରୁରି ବ୍ୟବସ୍ଥା । ଏ ସବୁ ଯେ ଆବଶ୍ୟକ ଏଥିରେ କାହାରି ସନ୍ଦେହ ନାହିଁ । ମାତ୍ର ଜଳସେଚନ ଲାଗି ସ୍ଥାୟୀ ବ୍ୟବସ୍ଥା କରି ନ ଗଲେ ଖାଲି ସାର ବିହନ ଯୋଗାଇବାରେ କିଛି ଫଳ ହେବ ନାହିଁ । ଏଥିପାଇଁ ବ୍ୟାପକ ବ୍ୟବସ୍ଥା ପ୍ରୟୋଜନ । ଅବଶ୍ୟ ଏ ସବୁ ଯୋଜନା କାର୍ଯ୍ୟରେ ପରିଣତ କରିବା ପାଇଁ ବହୁ ସମୟ ଲାଗିବ । ମାତ୍ର ଖାଲି ଅବସ୍ଥା ଦୃଷ୍ଟିରେ କୌଣସି ପ୍ରକାରେ କାମ ଚଳିବାର ବ୍ୟବସ୍ଥା କରିଗଲେ, ଏ ସମସ୍ୟାର ସମାଧାନ ହୋଇ ପାରିବ ନାହିଁ । ଏ ବିଜ୍ଞାନର ଯୁଗ । ବିଜ୍ଞାନର ସହାୟତା ନ ନେଇ କୃଷି ବା ଶିଳ୍ପ କାହାରି ଉନ୍ନତିବିଧାନ ସମ୍ଭବ ନୁହେଁ । ଶସ୍ତା ଓ ସୁବିଧାରେ ବିଦ୍ୟୁତଶକ୍ତି ମିଳିପାରିଲେ ଜଳସେଚନର ବ୍ୟବସ୍ଥା ସହଜରେ କରାଯାଇ ପାରିବ । ରୁଷିଆରେ ଏବେ ଏକ ଚତୁର୍ଥ ପାଞ୍ଚବର୍ଷିଆ ଯୋଜନା କରାଯାଇଛି । ସେଥିରେ କକେସସ୍ ପର୍ବତର ଉତ୍ତରରେ ଏକ ପ୍ରକାଣ୍ଡ କେନାଲ ନିର୍ମାଣ କରାଯାଉଛି । ଏଥିରେ ଦୁଇ ସ୍ଥାନରେ ବିଦ୍ୟୁତ୍ ଶକ୍ତି ଆହରଣ କରିବାର ମଧ୍ୟ ବନ୍ଦୋବସ୍ତ ହେଉଛି । ସବୁ ଉନ୍ନତ ଦେଶରେ ଏପରି ବ୍ୟବସ୍ଥା ଅତି ସାଧାରଣ କଥା ହେଲାଣି । ଭାରତବର୍ଷ ପଡ଼ିରହିଛି ପଛରେ । ଅନେକ ବାଟ ଯିବାକୁ ଅଛି । ବ୍ୟାପକ ବ୍ୟବସ୍ଥା ପ୍ରୟୋଜନ ।

---

# ସମସ୍ତଙ୍କୁ ମିଳିବ ତ ?

ପ୍ରଚୁର ଖାଦ୍ୟ ଉତ୍ପନ୍ନ ନ ହେଲେ ଲୋକଙ୍କୁ ଖାଇବାକୁ ମିଳିବ କାହୁଁ ? ମାତ୍ର ଖାଲି ଉତ୍ପନ୍ନ ହେଲେ ସମସ୍ତଙ୍କର ପେଟ ପୂରିଯିବ ନାହିଁ । ସେତିକି ସମସ୍ତଙ୍କ ଭାଗ୍ୟରେ ପଡ଼ିବ ଯେପରି ତା'ର ବ୍ୟବସ୍ଥା କରିବାକୁ ହେବ । ୧୯୨୯।୩୦ ମସିହାରେ ଯେତେବେଳେ ଜିନିଷ ପତ୍ରର ଦରଦାମ ଅତି ମାତ୍ରା ପଡ଼ିଗଲା, ବ୍ୟବସାୟୀଙ୍କର ହେଲା ବହୁତ କ୍ଷତି । କଳ-କାରଖାନାରେ ଜିନିଷ ତିଆରି ହେଲା ଅଳ୍ପ । ଅକର୍ମୀ ସଂଖ୍ୟା ବଢ଼ିଲା । ଜିନିଷ ଶସ୍ତା ହେଲେ କଣ ହେବ, ରୋଜଗାର ନ ହେଲେ ଲୋକେ କିଣିବେ କିପରି ? ବହୁଲୋକ ବେକାର—ଖାଇବାକୁ ମିଳିବ କାହୁଁ ? ଏତିକିବେଳେ ବ୍ୟବସାୟୀମାନେ ପ୍ରଚୁର ଗହମ ପୋଡ଼ି ଧ୍ୱଂସ କରିଦେଲେ । ଗହମର ପରିମାଣ କମାଇ ନ ଦେଲେ ଦାମ ବଢ଼ିବ କିପରି ? ଲକ୍ଷ ଲକ୍ଷ ଲୋକ ଖାଇବାକୁ ନ ପାଇଲା ବେଳେ ଖାଦ୍ୟଦ୍ରବ୍ୟର ଧ୍ୱଂସ ଏ ସମାଜ ବରଦାସ୍ତ କରି ପାରିଲା । ତେଣୁ ଖାଲି ଜିନିଷ ପ୍ରଚୁର ପରିମାଣରେ ପ୍ରସ୍ତୁତ ହେଲେ ସମସ୍ତଙ୍କର ଅବସ୍ଥା ଆପେ ଆପେ ସୁଧୁରି ପାରିବ ନାହିଁ । ସମାଜରେ ବଣ୍ଟନରୀତିର ପରିବର୍ତ୍ତନ କରିବା ପ୍ରୟୋଜନ ।

୧୯୪୬ ମସିହାର ଦୁର୍ଭିକ୍ଷ ପରେ ତଦନ୍ତ କରିବାପାଇଁ ଯେଉଁ କମିସନ ବସିଲେ, ସେମାନେ ହିସାବ କରି ଦେଖିଲେ ଯେ ବଙ୍ଗଦେଶରେ ଦୁର୍ଭିକ୍ଷରେ ୧୫ ଲକ୍ଷ ଲୋକ ପ୍ରାଣ ହରାଇଛନ୍ତି । କି ଚୋରା ବଜାର ! ଅନ୍ୟର ଦୁଃଖ ଦୁର୍ଦ୍ଦଶାରେ ଯେପରି ଅଖଣ୍ଡ ଆମୋଦ ! ବଙ୍ଗଳାର କେତେ ସ୍ଥାନରେ ଚାଉଳ ମହଣ ଟ ୮୦୯ ପର୍ଯ୍ୟନ୍ତ ମଧ୍ୟ ଉଠିଲା । ଦିନେ ଢାକା ବଜାରରେ ମହଣ ଟ ୧୦୫୯ ହୋଇଥିଲା ବୋଲି କାଗଜରେ ବାହାରିଲା । ଦେଶସାରା ସବୁଆଡ଼େ ଚୋରାବଜାର । ଦରିଦ୍ର ଲୋକଙ୍କପକ୍ଷରେ ଏତେ ଦାମ୍ ଦେଇ ଖାଦ୍ୟ ପାଇବା ସମ୍ଭବ ହେବ କିପରି ? ଚୋରାବଜାରର ଅବସ୍ଥା ଏପରି ହେଲା ଯେ ଗୋଟିଏ ଗୋଟିଏ ଅନାହାର ମୃତ୍ୟୁ ବଦଳରେ ବ୍ୟବସାୟୀଙ୍କ ହାତରେ ଲାଭ ହିସାବରେ ମହଜୁଦ୍ ହେଲା ଏକ ହଜାର ଟଙ୍କା ।

ଖାଲି ବ୍ୟବସାୟୀମାନେ ଯେ ମୁନାଫା ଉଠାଇ ଲାଗିଲେ ତା'ନୁହେଁ । କେତେକ ପ୍ରାଦେଶିକ ସରକାର ମଧ୍ୟ ଲାଭ କରି ଚାଲିଲେ । ସିନ୍ଧ ପ୍ରଦେଶର ସରକାର ମହଣ ସାତଟଙ୍କା ହିସାବରେ ଗହମ କିଣି ଚାରିଟଙ୍କା ଲାଭରେ ବିକିକଲେ । ଦଶଟଙ୍କା ହିସାବରେ ଚାଉଳ କିଣି ଦୁର୍ଭିକ୍ଷ ଅଞ୍ଚଳରେ ବିକିଲେ ଟ ୧୬୯ ରେ । ସିନ୍ଧୁ ପ୍ରଦେଶରେ ଯେଉଁ ବିରାଟ କେନାଲ ନିର୍ମାଣ କରାଯାଇଛି, ସେ ବାବଦରେ ତାଙ୍କର ବହୁତ ଧାର ଥିଲା । ସେ ସମସ୍ତ ଏହି ଲାଭରୁ ପରିଶୋଧ ହୋଇ ପାରିଲା । ସବୁଠାରୁ ବଡ଼ ଆଶ୍ଚର୍ଯ୍ୟ କଥା, ବଙ୍ଗଳା ଦୁର୍ଭିକ୍ଷ ବେଳେ ବଙ୍ଗ ସରକାର ମଧ୍ୟ ଲାଭ ଉଠାଇବା ପସନ୍ଦ କଲେ । ପଞ୍ଜାବରୁ ଟ ୧୧୮/ ହିସାବରେ ଗହମଅଟା କିଣି ଟ୧୭ରେ ବିକିଲେ କଲିକତା ବଜାରରେ । ଲୋକେ ଅନାହାରରେ ମଲାବେଳେ ଦେଶର ସରକାର ମଧ୍ୟ ଲାଭର ଲୋଭ ସମ୍ବରଣ କରି ପାରିଲେ ନାହିଁ ।

ଚୋରା ବଜାରରେ ଏ ଗତି । ଖାଦ୍ୟ ସବୁଆଡ଼େ ଦୁଷ୍ପ୍ରାପ୍ୟ । ଲୋକଙ୍କ ଦୁର୍ଦ୍ଦଶା ଶୋଚନୀୟ । ଉପାୟ କଣ ? ଭାରତ ସରକାର ଗ୍ରେଗରି ସାହେବଙ୍କୁ ସଭାପତି କରି ଗୋଟିଏ କମିଟି ନିଯୁକ୍ତ କଲେ । କମିଟି ସୁପାରିଶ

କଲେ ସବୁ ବଡ଼ ବଡ଼ ସହରରେ ଘଡ଼ର ବ୍ୟବସ୍ଥା ହେଉ, ସରକାର ମଫସଲ ଟାଁମାନଙ୍କର ସବୁ ଉଦ୍‌ବୃତ୍ତ ଖାଦ୍ୟ ନଜେ କଣି ଗୋଲାମାନଙ୍କରେ ମହଜୁତ୍ ରଖନ୍ତୁ । ଆବଶ୍ୟକ ଅନୁଯାୟୀ ସେ ଖାଦ୍ୟ ଯଥା ସମୟରେ ନର୍ଦ୍ଦିଷ୍ଟ ମୂଲ୍ୟରେ ଲୋକଙ୍କୁ କଣିବାକୁ ମିଳିବ । ସରକାର ଏ ସୁପାରଶ୍ ଗ୍ରହଣ କଲେ, ଆଜ ତଦନୁଯାୟୀ ସବୁଠାରେ ଏଇ ପନ୍ଥା ଅବଲମ୍ବନ କରାଯାଇଛି । ବାସ୍ତବ କାର୍ଯ୍ୟକ୍ଷେତ୍ରରେ ଏ ବଷୟରେ ଅନେକ ଆପତ୍ତି ଅଭିଯୋଗ ଶୁଣାଯାଏ ଏବଂ ଗଲଦ ଯେ ଅଛ, ଏ କଥା ଅସ୍ୱୀକାର କର ହେବ ନାହିଁ । କାର୍ଯ୍ୟପ୍ରଣାଳୀରେ କେତେ ପରବର୍ତ୍ତନ ଆବଶ୍ୟକ । ଅଧିକ ଶୃଙ୍ଖଳାର ବ୍ୟବସ୍ଥା ହେବା ପ୍ରୟୋଜନ । ମାତ୍ର ରେଗବ କମିଟି ଯାହା ସୁପାରଶ କଲେ, ସେ ପନ୍ଥା ବ୍ୟତୀତ ଗୋପ୍ୟ ବଜାର ବରୁଦ୍ଧରେ ଅଭିଯାନ କର ଲୋକଙ୍କୁ ଯଥାସାଧ୍ୟ ଖାଦ୍ୟ ଯୋଗାଇବାର ଅନ୍ୟ ଉପାୟ ନାହିଁ ।

ଏ ହେଲା ସାମୟିକ ବ୍ୟବସ୍ଥା । ଯେତେ ଦନଯାଏ ଖାଦ୍ୟର ଅନାଟନ ଥିବ, ଗୋପ୍ୟ ବଜାରର ସମ୍ଭାବନା ଥିବ, ସେତେଦନ ପର୍ଯ୍ୟନ୍ତ ଏ ବ୍ୟବସ୍ଥା କାଏମ୍ ରଖିବାକୁ ହେବ । ମାତ୍ର ପ୍ରଚୁର ଖାଦ୍ୟ ଉତ୍ପନ୍ନ ହେଲେ ମଧ୍ୟ ସମସ୍ତଙ୍କୁ ସବୁବେଳେ ଯେ ପେଟପୁର ଖାଇବାକୁ ମିଳିବ, ସେଥିଲାଗି ପୁଣି ନର୍ଦ୍ଦିଷ୍ଟ ବନ୍ଦୋବସ୍ତ କରବା ଆବଶ୍ୟକ । କୃଷକ ତା'ର ସ୍ତ୍ରୀପିଲା ସମେତ୍ ବର୍ଷସାର ଜମିରେ କଠିନ ପରଶ୍ରମ କର ମଧ୍ୟ ଯେବେ ବର୍ଷଭିତରେ ଛ'ମାସ ପାଇଁ ମାତ୍ର ଖାଦ୍ୟ ପାଏ, ତେବେ ଏ ସମସ୍ୟାର ସମାଧାନ ହେବ କପର ? ତା'ର ପରଶ୍ରମ ଲାଗି ସମାଜର ଦେବା ଉଚତ-ଉପଯୁକ୍ତ ମୂଲ୍ୟ । ସେହ ପରଶ୍ରମର ଫଳମଧ୍ୟରୁ ଯେବେ ବହୁଭାଗ ଯାଏ ଜମିଦାର, ମହାଜନ ଏବଂ ବ୍ୟବସାୟୀଙ୍କ ହାତକୁ ତେବେ କେବଳ ଖଟିବା ହିଁ ହେବ ତା'ର ସାର ।

୧୯୪୧ ସସିହାରେ ଘୋର ମହାଯୁଦ୍ଧ ବେଳେ ଆମେରକାର ପ୍ରେସିଡେଣ୍ଟ ରୁଜ୍‌ଭେଲ୍ଟ ଘୋଷଣା କଲେ, ସଭ୍ୟ ଜଗତରେ ମାନବର ଚ୍ଚାର ସ୍ୱାଧୀନତା । ସମସ୍ତେ ସ୍ୱାଧୀନଭାବରେ ନଜ ନଜର ମତ ବ୍ୟକ୍ତ

କରିବେ ଏବଂ ଇଚ୍ଛାନୁସାରେ ଯେ କୌଣସି ଧରଣରେ ଧର୍ମ ଉପାସନା କରି ପାରିବେ । ଡର ଭୟର କାହାର କୌଣସି କାରଣ ରହିବ ନାହିଁ, ଆଉ ଅଭାବ ଅନାଟନରେ କାହାରିକୁ ନିଷ୍ପେଷିତ ହେବାକୁ ପଡ଼ିବନାହିଁ । ଏ ଚାରିଟି ହେବ ମାନବର ଚାରି ମୌଳିକ ଅଧିକାର । ଅଭାବ ଅନାଟନ ନ ଘୁଞ୍ଚିଲେ ଆଉ ଶତ ସ୍ୱାଧୀନତାରେ କୌଣସି ଅର୍ଥ ନାହିଁ । ଖାଇବାକୁ ଖାଦ୍ୟ, ପିନ୍ଧିବାକୁ ବସ୍ତ୍ର, ରହିବାପାଇଁ ଘର, ମଣିଷମାନେ ସମସ୍ତଙ୍କର ଏକାନ୍ତ ପ୍ରୟୋଜନ । ସେଥିସଙ୍ଗେ ଶିକ୍ଷା ଏବଂ ସ୍ୱାସ୍ଥ୍ୟଲାଗି ଉପଯୁକ୍ତ ବ୍ୟବସ୍ଥା ଥିବା ଦରକାର । ସମସ୍ତଙ୍କ ଲାଗି ଅନ୍ତତଃ ଏତିକି ବ୍ୟବସ୍ଥା କରିବା ସମାଜ ଏବଂ ସରକାରଙ୍କର କର୍ତ୍ତବ୍ୟ ଓ ଧର୍ମ । ସମସ୍ତଙ୍କୁ ଉପଯୁକ୍ତ ଖାଦ୍ୟ ଯୋଗାଇବାର ଦାୟିତ୍ୱ ସରକାରଙ୍କୁ ବହନ କରିବାକୁହିଁ ହେବ । ସବୁ ସଭ୍ୟ ଦେଶରେ ସରକାର ଏ ନୀତି ଅବଲମ୍ବନ କରିଛନ୍ତି । ଦୁର୍ଭିକ୍ଷ ତଦନ୍ତ କମିସନ ମଧ୍ୟ ଏ ମତ ବ୍ୟକ୍ତ କରିଛନ୍ତି—ସରକାରଙ୍କୁ ଏ ଦାୟିତ୍ୱ ମୁଣ୍ଡରେ ନେବାକୁ ହିଁ ହେବ । ଖାଲି ଅଧିକ ଖାଦ୍ୟ ଉତ୍ପାଦନର ବ୍ୟବସ୍ଥା କଲେ ଦାୟିତ୍ୱ ଶେଷ ହେଲା ନାହିଁ । ସେ ଖାଦ୍ୟ ଯେପରି ସବୁ ସମୟରେ, ସବୁସ୍ଥାନରେ, ସବୁ ଲୋକଙ୍କୁ ମିଳିପାରିବ ସେଥିଲାଗି ମଧ୍ୟ ସରକାରଙ୍କୁ ଯଥାର୍ଥ ବ୍ୟବସ୍ଥା କରିବାକୁ ପଡ଼ିବ ।

---

# ଯୋଜନା

ସରକାରୀ ବେସରକାରୀ ସବୁ ମହଲରେ ଉଦ୍‌ବେଗ ଆସିଛି । ସମସ୍ତେ ଏବେ ଅବସ୍ଥାର ଗୁରୁତ୍ୱ ବୁଝୁଛନ୍ତି । କିପରି ଭାବରେ ଏ ଦେଶ ଲୋକେ ଖାଇ ପିଇ ସୁସ୍ଥ ସବଳ ହୋଇ ରହିବେ, ଏ ବିଷୟରେ ବହୁ ଆଲୋଚନା ହେଉଛି । ଉପସ୍ଥିତ ଖାଦ୍ୟସଙ୍କଟରୁ ଉଦ୍ଧାର ପାଇବାଲାଗି ଉପାୟ ଖୋଜା ଯାଉଛି ଏବଂ ତାହି ସଙ୍ଗେ ସଙ୍ଗେ ପୁଣି ଏ ବିରାଟ ସମସ୍ୟାର ସ୍ଥାୟୀ ସମାଧାନ ପାଇଁ ମଧ୍ୟ ନାନା ଯୋଜନା ପ୍ରକାଶ ପାଇଛି ।

ଆଠଜଣ ପ୍ରବୀଣ ଅର୍ଥଶାସ୍ତ୍ରୀଙ୍କ ନାମଜାଦା ବ୍ୟବସାୟୀ ୧୯୪୪ ମସିହା ଜାନୁଏରୀ ମାସରେ ବମ୍ବେଠାରୁ ଏକ ଯୋଜନା ପ୍ରକାଶ କଲେ । ଉଦ୍ଦେଶ୍ୟ ହେଲା, ପନ୍ଦରବର୍ଷ ମଧ୍ୟରେ ଭାରତବର୍ଷକୁ ସମୃଦ୍ଧିଶାଳୀ କରିବାକୁ ହେବ । ଏତିକି ସମୟ ମଧ୍ୟରେ ଭାରତରେ ଜଣପିଛା ଆୟ ଦୁଇଗୁଣ କରିବାକୁ ହେବ । ପୁଣି ବର୍ଷକୁ ବର୍ଷ ଏ ଦେଶର ଲୋକସଂଖ୍ୟା ୫୦ ଲକ୍ଷ ହିସାବରେ ବଢ଼ି ଚାଲିଛି । ତେଣୁ ପନ୍ଦର ବର୍ଷ ଶେଷହେଲା ବେଳକୁ ମୋଟ ଆୟ ବର୍ତ୍ତମାନ ଆୟର ତିନିଗୁଣ ହେବା ଆବଶ୍ୟକ । ତା' ହେଲେ ଯାଇ ଜଣପିଛା ଆୟର ପରିମାଣ ଦୁଇଗୁଣ ହୋଇ ପାରିବ । କୃଷିଶିଳ୍ପ, ଗମନାଗମ, ଶିକ୍ଷା, ସ୍ୱାସ୍ଥ୍ୟ ସବୁଦିଗରେ ନିର୍ଦ୍ଦିଷ୍ଟ ବ୍ୟବସ୍ଥା ଲାଗି ଏଥିରେ ସୁପାରିଶ କରା ଯାଇଛି ।

ଖାଦ୍ୟଲାଗି ବିଦେଶକୁ ହାତ ପତେଇବା ଭାରତବର୍ଷ ପରି ଦେଶ- ପକ୍ଷରେ ବିଡ଼ମ୍ବନା । ଦେଶବାସୀଙ୍କ ପାଇଁ ଯଥେଷ୍ଟ ଖାଦ୍ୟ ଆମର ଦେଶରେ ଉତ୍ପନ୍ନ କରିବାକୁ ହେବ—ଏଇ ହେଲା ଲକ୍ଷ୍ୟ । ପ୍ରଥମ ଅବସ୍ଥାରୁ ବିଦେଶକୁ ଖାଦ୍ୟଦ୍ରବ୍ୟ ରପ୍ତାନି କରିବା ଉଦ୍ଦେଶ୍ୟ ହୋଇ ନ ପାରେ । ଖାଦ୍ୟଫସଲ ସଙ୍ଗେ ସଙ୍ଗେ ପୁଣି କପା, ଝୋଟ, ଗୁଡ଼, କଫି, ତମାଖୁ ପ୍ରଭୃତି ଫସଲର ମଧ୍ୟ ଉନ୍ନତି ବିଧାନ କରିବାକୁ ହେବ । କାଉଳି ଭାବରେ କି ଉପାୟରେ ଏସବୁର ଉନ୍ନତି କରାଯାଇ ପାରିବ, ସେ ସବୁ ଏ ଯୋଜନା ମଧ୍ୟରେ ଆଲୋଚନା କରାଯାଇଛି । ଏ ପନ୍ଦର ବର୍ଷ ମଧ୍ୟରେ ଆମ ଦେଶର କୃଷିସମ୍ପଦ ଶତକରା ୧୩୦ ଭାଗ ଅଧିକ ହେବ ବୋଲି କଳ୍ପନା କରା ଯାଇଛି ଏବଂ ସେଥିଲାଗି ୧୨୪୦ କୋଟି ଟଙ୍କା ବ୍ୟୟ କରିବାକୁ ହେବ ବୋଲି ହିସାବ କରାଯାଇଛି ।

ଏ ଯୋଜନା ପ୍ରକାଶ ପାଇବାର ପ୍ରାୟ ଛଅମାସ ପରେ ଶ୍ରମିକ ଫେଡ଼େରେସନ୍ ତରଫରୁ ଜନତାର ଯୋଜନା ବୋଲି ଏକ ଦଶବର୍ଷିଆ ଯୋଜନା ପ୍ରକାଶିତ ହେଲା । ବମ୍ବେ ଯୋଜନା ଠାରୁ ଏଥିରେ ଅନେକ ପାର୍ଥକ୍ୟ । ଲୋକଙ୍କ ପାଇଁ ଯଥେଷ୍ଟ ଏବଂ ପୁଷ୍ଟିକର ଖାଦ୍ୟ ଦେଶ ଭିତରେ ଉତ୍ପନ୍ନ କରିବାକୁ ହେବ; ଏକଥା ନିଶ୍ଚିତ । ମାତ୍ର ସେତିକି ହେଲେ ଯଥେଷ୍ଟ ହେବ ନାହିଁ । ଏଇ ଦଶବର୍ଷ ଭିତରେ ଅଧିକ ଉଦ୍‌ବୃତ୍ତ ଖାଦ୍ୟ ଉତ୍ପନ୍ନ କରି ବିଦେଶକୁ ରପ୍ତାନି କରିବାକୁ ହେବ । ଏ ହେଲା ଯୋଜନାର ଲକ୍ଷ୍ୟ । ଏ ଯୋଜନା ହିସାବରେ ଦଶବର୍ଷ ପୂର୍ଣ୍ଣ ହେଲା ବେଳକୁ ଭାରତର କୃଷି- ସମ୍ପଦ ବର୍ତ୍ତମାନ ଯାହା ଅଛି, ତା'ର ପାଞ୍ଚଗୁଣ ହୋଇଥିବ ବୋଲି କଳ୍ପନା କରାଯାଇଛି । ଦଶବର୍ଷ ଭିତରେ ଏଥିଲାଗି ୨୯୫୦ କୋଟି ଟଙ୍କା ଖର୍ଚ୍ଚ କରିବା ଆବଶ୍ୟକ ବୋଲି ମଧ୍ୟ ହିସାବ କରାଯାଇଛି । ପୁଣି ସବୁ ଜମିବାଡ଼ି ସରକାର ସମ୍ପତ୍ତି କରିବାକୁ ହେବ । ଜମିଦାର ରହିବେ ନାହିଁ କି ଯେ ଚାଷୀ ଚାଷକରେ ତା'ର କୌଣସି ଚାଷଜମି ରହି ପାରିବ ନାହିଁ । ଏତକ ନ ହେଲେ କୃଷିର ଉନ୍ନତି ଅସମ୍ଭବ । ତେଣୁ ଏ ଯୋଜନା ଅନୁଯାୟୀ ସମସ୍ତ ଜମି ସରକାରଙ୍କ ହାତକୁ ଆଣିବା ପାଇଁ ପୁଣି କ୍ଷତିପୂରଣ ହିସାବରେ ୧୭୩୫ କୋଟି ଟଙ୍କା ଦିଆଯିବାର ସୁପାରିଶ କରାଯାଇଛି ।

ହଜାର ହଜାର କୋଟି ଟଙ୍କା ! ଏସବୁ ଆଗେ ବୁଢ଼ୀ ମା'ଙ୍କ କାହାଣୀରେ କହାଯାଉଥିଲା । ଅଙ୍କ ଗଣିତ ପ୍ରଶ୍ନମାନଙ୍କରେ ସ୍ଥାନ ପାଉଥିଲା । ଏବେ କିନ୍ତୁ ଆଉ ସେ କଥା ନାହିଁ । ଏ ଯୁଦ୍ଧକାଳ ମଧ୍ୟରେ ହଜାର ଲକ୍ଷ ମୃତ୍ୟୁ ଶୁଣିବାରେ ଲୋକେ ଏତେ ଅଭ୍ୟସ୍ତ ହୋଇଗଲେଣି ଯେ କୌଣସି ଘଟଣାରେ ୨୫, ୫୦ ମୃତ୍ୟୁ ହେଲେ ବିଶେଷ କିଛି ହେଲା ପରି ଜଣାଯାଉ ନାହିଁ । ଯୁଦ୍ଧପାଇଁ ଗୋଟିଏ ଗୋଟିଏ ଦିନରେ ଅଜସ୍ର ଟଙ୍କା ଖର୍ଚ୍ଚ ହେଲା । ୧୯୪୪-୪୫ ମସିହାରେ ଭାରତ ସରକାରଙ୍କର ଯୁଦ୍ଧ ଖର୍ଚ୍ଚ ୪୫୬ କୋଟି ଟଙ୍କା । ୧୯୪୬ ଜାନୁଆରୀ ମାସ ସୁଦ୍ଧା ସରକାର ୮୩୩ କୋଟି ଟଙ୍କା ଯୁଦ୍ଧଋଣ ଏହି ଦେଶରୁ ସଂଗ୍ରହ କରି ପାରିଲେ । ତେଣୁ ୧୫ ବର୍ଷ ଭିତରେ ଗଠନମୂଳକ କାର୍ଯ୍ୟପାଇଁ ହଜାର ହଜାର କୋଟି ଟଙ୍କା ଖର୍ଚ୍ଚ କରିବାରେ ଆଉ ବିସ୍ମୟର କୌଣସି କାରଣ ନାହିଁ । କୃଷିଲାଗି ହଜାର ଦୁଇ ହଜାର କୋଟି ବ୍ୟୟ କରିବା ଆଉ ଅସଙ୍ଗତ ବୋଲି ବିବେଚିତ ହେବ ନାହିଁ ।

ଭାରତ ସରକାର ଏକ ଯୋଜନା ପ୍ରକାଶ କଲେଣି । ଦଶ ବର୍ଷ ଭିତରେ ଭାରତର କୃଷିସମ୍ପଦ ଦେଡ଼ଗୁଣ କରାଯିବ ଏବଂ ପନ୍ଦର ବର୍ଷ ଶେଷ ହେଲା ବେଳକୁ ଦୁଇଗୁଣ ହୋଇ ପାରିବ । ଏହି ଲକ୍ଷ୍ୟ ସାଧନପାଇଁ ଏକ ହଜାର କୋଟି ଟଙ୍କା ବ୍ୟୟ କରାଯିବ ଏବଂ ତା' ଛଡ଼ା ପୁଣି ବର୍ଷକୁ ବର୍ଷ ଅନ୍ତତଃ ୨୦ କୋଟି ଲେଖାଏଁ ମଧ୍ୟ ଖର୍ଚ୍ଚ କରିବାକୁ ପଡ଼ିବ । ଏଥିରେ ଖାଲି ଖାଦ୍ୟଶସ୍ୟ ନୁହେଁ, ଫଳମୂଳ, ପନିପରିବା ଏବଂ ତେଲ ପ୍ରଭୃତି ଅଧିକ ପରିମାଣରେ ଉତ୍ପନ୍ନ କରିବାର ବ୍ୟବସ୍ଥା ଅଛି । ଦୁଧର ପରିମାଣ ଯେପରି ତିନିଗୁଣ କରାଯାଇ ପାରିବ, ସେ ଲକ୍ଷ୍ୟ ରଖି ଏ ଯୋଜନା ତିଆରି କରାଯାଇଛି । ଜଳସେଚନର ବ୍ୟବସ୍ଥା ଏଥିରେ ପାଇଛି ପ୍ରଥମ ସ୍ଥାନ । ଜମିରୁ ଅଧିକ ଫସଲ ଉଠାଇବା ପାଇଁ, ପଡ଼ିଆ ଜମି ଆବାଦୀ କରିବାପାଇଁ ନାନା ବିଧାନ ଖଞ୍ଜା ଯାଇଛି ।

ନିଖିଳ ଭାରତୀୟ ଯୋଜନାର ଅଙ୍ଗରୂପେ ଓଡ଼ିଶାପାଇଁ ମଧ୍ୟ ଏକ ଯୋଜନା ପ୍ରସ୍ତୁତ କରାଯାଇଛି । ସରକାରଙ୍କ କୃଷିବିଭାଗ ଆଜଯାଏ ଯାହା

କାମ କରୁଛି, ସେ ଅତି ନଗଣ୍ୟ । ଭାରତବର୍ଷର ଅନ୍ୟାନ୍ୟ ପ୍ରଦେଶଠାରୁ ଓଡ଼ିଶାରେ କୃଷିର ଅବସ୍ଥା ନିକୃଷ୍ଟ । ତେଣୁ ଅନେକ ବାଟ ଆମକୁ ଯିବାକୁ ଅଛି । ହଳ ଠେଲି ଚାଲିଲେ ସବୁବେଳେ ପଛରେ ପଡ଼ିଥିବା । ଓଡ଼ିଶାର ବଡ଼ ସମସ୍ୟା ବନ୍ୟା ନିବାରଣ ଆଉ ଜଳସେଚନ । କେତେକାଳ ଧରି ଏ ବନ୍ୟା ନିବାରଣ ପାଇଁ କେତେ କମିଟି କେତେ ଆଲୋଚନା କଲେଣି । ଦୁଃଖର କଥା ଆଜିଯାଏ କିଛି ଫଳ ଫଳି ପାରିଲା ନାହିଁ । ଜଳ ସେଚନର ବ୍ୟବସ୍ଥା ଅଳ୍ପ । ବହୁତ ଅଞ୍ଚଳରେ ତେଣୁ ମରୁଡ଼ିର ଭୟ, ଆଉ ଅଧିକାଂଶ ଜମି ଏକ-ଫସଲି । କୃଷିଲାଗି ଗବେଷଣା ଆବଶ୍ୟକ । ଭଲ ସାର ଲୋଡ଼ା, ଭଲ ବିହନ ଲୋଡ଼ା । ମାଙ୍କଡ଼ମାରି ଆବଶ୍ୟକ; କ୍ଷେତବାଡ଼ିରେ ପୋକଙ୍କ ବିରୁଦ୍ଧରେ ଅଭିଯାନ କରିବାକୁ ହେବ । ନୂଆ ନୂଆ ପ୍ରଣାଳୀର ଗ୍ରହଣ, ନୂଆ ନୂଆ ଫସଲର ପ୍ରଚଳନ; ଏସବୁ ନିଶ୍ଚୟ ଲୋଡ଼ା । ମାତ୍ର ପ୍ରଧାନ ସମସ୍ୟା ବନ୍ୟା ନିବାରଣ ଆଉ ଜଳସେଚନର ବ୍ୟବସ୍ଥା । ମହାନଦୀରେ ଯେଉଁ ଜଳ ଭଣ୍ଡାରର ବ୍ୟବସ୍ଥା କରାଯାଉଛି, ସେଥିରେ ଏ ଦୁଇ ସମସ୍ୟାର ଅନେକ ପରିମାଣରେ ସମାଧାନ ହୋଇ ପାରିବ । ନଦୀର ପ୍ରଖର ବନ୍ୟାଜଳ ଗାଁଗଣ୍ଡା ଜନପ୍ରାଣୀ ନ ଭସାଇ ବହୁପରିମାଣରେ ପ୍ରକାଣ୍ଡ ଜଳଭଣ୍ଡାରମାନଙ୍କରେ ବନ୍ଦୀହୋଇ ରହିବ । ବର୍ଷସାରା ନିୟମିତ ଭାବରେ ଏଥିରୁ ପାଣି ଖଲାସ କରାଯିବ । ତେଣୁ ସବୁବେଳେ ନଦୀ ମଧ୍ୟରେ ସହଜରେ ନୌକା ଯିବା ଆସିବା କରିପାରିବ, ଏଥିରୁ ପୁଣି କୃତ୍ରିମ ଜଳପ୍ରପାତ ସୃଷ୍ଟିହୋଇ ବିଦ୍ୟୁତ୍ ଶକ୍ତି ଆହରଣ କରାଯିବ । ଶସ୍ତା ଏବଂ ସହଜରେ ବିଦ୍ୟୁତ୍‌ଶକ୍ତି ମିଳିପାରିଲେ ଜଳସେଚନର ବ୍ୟବସ୍ଥା ସହଜ ହୋଇ ପଡ଼ିବ । ମହାନଦୀରେ ଏ ବିଧାନ କୃତକାର୍ଯ୍ୟ ହୋଇ ସାରିଲେ ଅନ୍ୟାନ୍ୟ ନଦୀରେ ମଧ୍ୟ ଏ ବ୍ୟବସ୍ଥା କରାଯାଇ ପାରିବ । ଏସବୁ ଆଉ ଖାଲି କଳ୍ପନାର କଥା ନୁହେଁ । ଆମେରିକାର ଟେନେସି ଉପତ୍ୟକାର ବିରାଟ ବ୍ୟବସ୍ଥା ସାରା ପୃଥିବୀକୁ ଚମତ୍କୃତ କରିଛି । ବନ୍ୟାଜଳ ସମ୍ପୂର୍ଣ୍ଣରୂପେ ଆୟତ୍ତ କରାଯାଇଛି । ଜମି ଉପରୁ ମାଟି ଧୋଇଯାଇ ଆଉ ସମୁଦ୍ରରେ ପଶୁ ନାହିଁ । ଯେଉଁଠାରେ ଘାସଗଛଟିଏ ନ ଥିଲା, ସେଠାରେ ଏବେ ବଡ଼ ବଡ଼ ଗଛବୃକ୍ଷରେ ପୂର୍ଣ୍ଣପ୍ରଶସ୍ତ ଜଙ୍ଗଲ । ପୁଣି ଏଠାରେ ପ୍ରଚୁର ବିଦ୍ୟୁତ୍‌ଶକ୍ତି ଉତ୍ପନ୍ନ କରାଯାଉଛି । କୃଷିର ଉନ୍ନତି ସଙ୍ଗେ ସଙ୍ଗେ କେତେ

କଳକାରଖାନା ଶସ୍ତା ବିଦ୍ୟୁତ୍ ସାହାଯ୍ୟରେ ମୁଣ୍ଡଟେକି ଠିଅହେବା ସ୍ୱାଭାବିକ । ଏହି ଆଦର୍ଶରେ ଏବେ ଭାରତବର୍ଷ ପାଇଁ ନାନା ଯୋଜନା କରାଯାଇଛି । ଏସବୁ ବ୍ୟବସ୍ଥା ସୁଗୃହ୍ଣରୂପେ କାର୍ଯ୍ୟକାରୀ ହୋଇ ପାରିଲେ ଭାରତର ଅର୍ଥନୀତିକ ମୁଖମଣ୍ଡଳ ଉଜ୍ଜ୍ୱଳ ହୋଇ ଉଠିବ, ଏଥିରେ ସନ୍ଦେହ ନାହିଁ ।

ଆହୁରି ଅଛି ଅନ୍ତରାୟ । ପାଣେ ଗୁଣ୍ଠେ ଯାହାର ଜମି ସେ କି ଚାଷ କରିବ ? ପୈତୃକ ସମ୍ପତ୍ତି ଭାଗବଣ୍ଟା ହୋଇ ହୋଇ ଜମିସବୁ ଛିଣ୍ଡିଛିଣ୍ଡି ହୋଇଗଲଣି । ଜାଣିବା ଲୋକଙ୍କ ମତରେ ଜଣେ କୃଷକର ଅନ୍ତତଃ କମରେ ପାଞ୍ଚ ଏକର ଜମି ନ ହେଲେ, ସେ ଚାଷୀହୋଇ ପରିବାର ପୋଷଣ କରି ପାରିବ ନାହିଁ, କି ଚାଷୀହୋଇ ଚାଷରେ ପୁରା ମନପ୍ରାଣ ଦେଇ କାମ କରିବାକୁ ଚାହିଁଲେ, ଯଥେଷ୍ଟ କାମ ମଧ୍ୟ ତାକୁ ମିଳି ପାରିବ ନାହିଁ । ଗୋଟିଏ ଚାଷୀ ପରିବାର ପିଛା ଭାରତବର୍ଷରେ ହାରାହାରି ପାଞ୍ଚ ଏକର ଜମି । ଓଡ଼ିଶାରେ ପ୍ରାୟ ତିନି ଏକର । ଏସବୁ କିନ୍ତୁ ହାରାହାରି ହିସାବ । ଅନେକ ସ୍ଥାନରେ କୃଷକର ଜମି ଅଧ ଏକରରୁ ମଧ୍ୟ ଅଳ୍ପ । ବଙ୍ଗଦେଶରେ ଶତକଡ଼ା ୪୬ ଜଣ ଚାଷୀଙ୍କର ଜମି ଦୁଇ ଏକରରୁ କମ୍ । ପୁଣି ଆହୁରି ଦୁର୍ଭାଗ୍ୟ, ସେ ଏକରରେ ଦୁଇ ଏକର ଜମି ପୁଣି ପାଞ୍ଚଜାଗାରେ ଖଣ୍ଡେ ଖଣ୍ଡେ । ଏଥିରେ କି ପ୍ରକାର ଚାଷ ସମ୍ଭବ ? କୌଣସିମତେ ବିହନ ଗଣ୍ଡାଏ ଫିଙ୍ଗିଦେଇ ଆସିଲେ ଯାହା ଯୋଗ ଥିବ, ଫଳିବ । ଆମେରିକାରେ ଜଣେ ଚାଷୀ ପିଛା ହାରାହାରି ଜମି ୧୪୫ ଏକର, ଜର୍ମାନୀରେ ୨୨ ଏକର, ଇଂଲଣ୍ଡରେ ୨୦ ଏକର । ଆମ ଦେଶରେ ଏପରି ଖେଳ କଣ୍ଢେଇ ପରି ଜମିରେ କି ଫସଲ ଅଦାୟ ହେବ । ଅନ୍ୟାନ୍ୟ ବ୍ୟବସାୟ ନାହିଁ; ତେଣୁ ଅଧିକାଂଶ ଲୋକେ ସେହି ଜମିଖଣ୍ଡିକ ଉପରେ ନିର୍ଭର କରି ରହିଛନ୍ତି । ଅନ୍ୟାନ୍ୟ ବ୍ୟବସାୟର ପ୍ରସାର ନ ହେଲେ, ଯେତେ ବ୍ୟବସ୍ଥା କଲେ ମଧ୍ୟ ଏଥିରୁ ସହଜରେ ନିସ୍ତାର ମିଳିବ ନାହିଁ ।

ଏତିକି ନୁହେ । ଅଧିକାଂଶ ଜମି ଆମ ଦେଶରେ ଜମିଦାର ଆଉ ମହାଜନଙ୍କ ହାତରେ । ଯେଉଁମାନେ ପ୍ରକୃତରେ ଚାଷ କରନ୍ତି, ସେମାନଙ୍କ

ହାତରେ ଅଛି ମୋଟେ ଉନବିଂଶ ଭାଗ ଜମି । ମହାଜନମାନେ କୃଷିର ପ୍ରସାର ପାଇଁ କିଛି କରନ୍ତି ନାହିଁ । ଅନେକ ଜମିଦାର ବିଳାସ ବ୍ୟସନରେ ସହରରେ ଜୀବନ ଯାପନ କରନ୍ତି । ଜମି ସଙ୍ଗେ ସମ୍ପର୍କ ଅତି ଅଳ୍ପ । ଯେ କୃଷୀ, ତା'ର ଯେବେ ଜମି ଉପରେ ସବୁପ୍ରକାର ଅଧିକାର ନ ରହେ, ତା' ପରିଶ୍ରମର ଫଳାଫଳ ଯେବେ ସେ ସମ୍ପୂର୍ଣ୍ଣ ଭୋଗ ନ କରେ, ତେବେ କୃଷିର ଉନ୍ନତି ବିଧାନ ଲାଗି ତା'ର ପ୍ରବୃତ୍ତି ଅଳ୍ପ ହେବା ସ୍ୱାଭାବିକ । କୃଷିର ପ୍ରସାରପାଇଁ ଯେଉଁ ଯୋଜନା ହେଉଛି, ଏଥିରେ ଜମି ଜମାର ଅଧିକାର ଯେପରି କୃଷୀ ହାତକୁ ଯାଏ, ସେପରି ବ୍ୟବସ୍ଥା କରିବା ଅବଶ୍ୟକ । ଏଥିଲାଗି ଏବେ ନାନା ଆଲୋଚନା ହେଉଛି । ଖଣ୍ଡାମସ୍ତ ବ୍ୟବସ୍ଥାରେ ବିଶେଷ ଫଳ ସମ୍ଭବ ନୁହେଁ । ଆଇନକାନୁନରେ ବହୁତ ଓଲଟ ପାଲଟ କରିବା ଅବଶ୍ୟକ । ବ୍ୟାପକ ବ୍ୟବସ୍ଥା ନ ହେଲେ ପ୍ରତିକାର ସମ୍ଭବ ହେବ ନାହିଁ ।

---

## ସମାଜର ମତଗତ

ଜୀବନ ସାରା ଖରାରେ ବର୍ଷାରେ ପରିଶ୍ରମ କରି ଯେଉଁ କୃଷକ ମୃତ୍ତିକାରେ ଜୀବନ ଦିଏ, ୪୦ କୋଟି ଲୋକଙ୍କୁ ଅନ୍ନ ଯୋଗାଇବାର ଦାୟିତ୍ୱ ଯେ ମସ୍ତକ ଉପରେ ବହନ କରେ, ସମାଜରେ ତା'ର ସ୍ଥାନ କେଉଁଠି? ପାଠ ନ ପଢ଼ି ମୂର୍ଖ ହେଲେ, ଅନ୍ୟ ସକଳ ବ୍ୟବସାୟ ଲାଗି ଅଯୋଗ୍ୟ ହେଲେ ଗୃହ-ବୃତ୍ତି ଅବଲମ୍ବନ କରିବାକୁ ହୁଏ। ଏହାହିଁ ଯେବେ ସମାଜର ମନୋବୃତ୍ତି ହୁଏ, ତେବେ ଏ ଦେଶରେ କୃଷି-ଅବସ୍ଥାର କଦାପି ପରିବର୍ତ୍ତନ ହେବ ନାହିଁ। ସରକାରୀ ଅଫିସରେ ଚପରାଶି ଯେବେ କୃଷକଠାରୁ ସମାଜରେ ଉଚ୍ଚ ଆସନ ପାଏ, ତେବେ ଅଧିକ ଅନାଟନ ଆଉ ଅନଶନ ଏ ଦେଶରେ ଚିରକାଳ ଲାଗି ରହିବ। ପୈତୃକ ସମ୍ପତ୍ତି ଅଛି ପାଠିଏ ଏକର ଜମି। ପୁଅ କୃଷି କଲେଜର ଉପାଧି ପାଇ ସରକାରୀ ଫାରମରେ ପାଠିଏ ଟଙ୍କାରେ ଚାକିରି କରିବା ବେଶି ପସନ୍ଦ କରେ। ଏ ହେଲା ସମାଜରେ ଭେଦାଭେଦ, ଉଚ୍ଚ ନୀଚ ବିଚାର।

ଏପରି କି ହଳ କରିବାଠାରୁ ମାଗି ଖାଇବା ମଧ୍ୟ ଗୌରବର ବିଷୟ ବୋଲି ବୁଝାଯାଏ। ଏଥିରେ ପୁଣି ଉଚ୍ଚ ଜାତି ବୋଲି ଛଳନା। ବ୍ରାହ୍ମଣ ହୋଇ ହଳ କରିବାପାଇଁ ବହୁ ଆନ୍ଦୋଳନ ଏବଂ ଲଙ୍ଗଳ ଉତ୍ସବର ଆବଶ୍ୟକ ହୁଏ। ସେଥିରେ ପୁଣି କି ଚହଳ! କେତେ ସୌଖୀନ ଲୋକେ

ନିଜ ହାତରେ ଜମି ଖୋଳି, ଗଛ ଲଗାଇ, ପାଣିଦେଇ ପ୍ରତିଦିନ ପରିଶ୍ରମ କରନ୍ତି ଫୁଲ ବଗିଚା ସଜାଡ଼ିବା ପାଇଁ । ମାତ୍ର ସେତିକି ପରିଶ୍ରମ କୃଷିଲାଗି କଲେ, ଅତି ଅଦ୍ଭୁତ ଅସଙ୍ଗତ କଥା ବୋଲି ହୁଏ ପଡ଼ିବ । ସମାଜରେ ଯେତେଦିନ ଏ ମନୋଭାବ ରହିଥିବ, ଶିକ୍ଷିତ ବୁଦ୍ଧିମାନ ଲୋକେ କୃଷି ଦିଗରେ ଆକୃଷ୍ଟ ହେବେ କିପରି ? କୃଷି ବ୍ୟବସାୟ ଲାଭଜନକ ହେବା ଯେପରି ଆବଶ୍ୟକ, ସମାଜ କୃଷକକୁ ସେପରି ଉଚ୍ଚ ଆସନ ମଧ୍ୟ ଦେବା ଆବଶ୍ୟକ । ତା' ନ ହେଲେ କୃଷିର ପ୍ରସାର ସମ୍ଭବ ହେବ ନାହିଁ ।

ଏ ମନୋଭାବର କାରଣ କଣ ? କେତେ ସୌଖିନ ଯୁବକ-ଯୁବତୀ ଆମୋଦ ବିଳାସରେ ନିଜେ ନିଜେ ନିଜର ମଟରଗାଡ଼ି ଚଳାନ୍ତି । ମାତ୍ର ଡ୍ରାଇଭରର ପୋଷାକ ପିନ୍ଧି ଗାଡ଼ି ଚଳେଇବା ଯଦି ବାଧ୍ୟତାମୂଳକ କରି ଦିଆଯାଏ, ତେବେ ସେମାନଙ୍କ ମଧ୍ୟରୁ କେହି ହେଲେ ଚଳେଇବା ପାଇଁ ଆଗୁସାର ହେବେ ନାହିଁ । ଭେଦାଭେଦ କେଉଁଠାରେ ? କେତେ ଲୋକ ଜୀବିକା ଉପାର୍ଜନ କରନ୍ତି ନଈ, ପୋଖରୀ, ସମୁଦ୍ରରୁ ମାଛ ଧରି, ସମାଜ ସେମାନଙ୍କୁ ସ୍ଥାନ ଦିଏ କେଉଁଠାରେ ? ବନଶୀ ପକାଇ ମାଛ ଧରିବା ନୀଚ ଲୋକର କାମ ବୋଲି ବିବେଚିତ ହୁଏ । ମାତ୍ର ସିଲଟାରି ଢଙ୍ଗରେ ପୋଷାକ ପିନ୍ଧି ସ୍ପୋର୍ଟସ୍ ବନଶୀ ଧରି ସମ୍ଭ୍ରାନ୍ତ ଲୋକେ ଯେତେବେଳେ ଅଭିଯାନରେ ବାହାରନ୍ତି, ସେ ମାଛଧରା ହୁଏ ଆମୋଦ, ଉତ୍ସବ, ଆଡ଼ମ୍ବରର ପରିଗୃହୀତ; କାର୍ଯ୍ୟରେ ପାର୍ଥକ୍ୟ ନାହିଁ । କିଏ କରୁଛି ଏବଂ କି ଢଙ୍ଗରେ କରାଯାଉଛି, ସେଇ ହେଲା ମାପକାଠି—ସେଠାରେହିଁ ପ୍ରଭେଦ । ଯୁଦ୍ଧ ସମୟରେ ବିଲାତରେ ସବୁ ସୁସ୍ଥକାୟ ଯୁବକ ଜଳ, ସ୍ଥଳ, ଆକାଶରେ ଯୁଦ୍ଧକରି ବାହାରିଲେ, ଦେଶ ମଧ୍ୟରେ ଖାଦ୍ୟ ଉତ୍ପନ୍ନ ହେବ କିପରି ? ଜମିରୁ ଫସଲ ଉତ୍ପନ୍ନ କରିବ କିଏ ? ସମ୍ଭ୍ରାନ୍ତ ମହିଳା କେବେ ବିଲବାଡ଼ିରେ ଚାଷ କରିବାର ଦେଖା ନ ଥିଲା । ସରକାର ସୃଷ୍ଟି କଲେ ଏକ ଲ୍ୟାଣ୍ଡ୍ ଆର୍ମି ବା ଭୂମିସେନା । ଏଥିରେ ସୈନିକ କେବଳ ସ୍ତ୍ରୀଲୋକେ । ମିଲଟାରି ପୋଷାକ ପିନ୍ଧି ଅତି ଆନନ୍ଦରେ ଆଗ୍ରହରେ ଏମାନେ ସକଳ କୃଷିକାମ କରି ପାରିଲେ, ଜମିରୁ ଫସଲ ଅଦାୟ କରି ପାରିଲେ ।

କର୍ମ ବିଶେଷରେ ଯେପରି ଭେଦାଭେଦ ନାହିଁ; ଉଚ୍ଚ ନୀଚର ବିଗ୍ରହ ନାହିଁ । କରିବାର ପ୍ରଣାଳୀ ଯେଉଁ ସବୁ ପାର୍ଥକ୍ୟ । ଲିଣ ଧରି ବଳଦ ଯୋଚି ହଳ କରିବା ଯେଉଁ କାମ, ଟ୍ରାକ୍ଟର ବା କଳଲଙ୍ଗଳ ଚଳେଇ ହଳ କରିବା ମଧ୍ୟ ଠିକ୍ ସେଇ କାମ । ମାତ୍ର କଳଲଙ୍ଗଳ ଚଳେଇବା ପାଇଁ ଅନେକ ଶିକ୍ଷିତ ଯୁବକ ଅଗ୍ରହରେ ବାହାରି ପଡ଼ିବେ । କୃଷିର ପ୍ରଣାଳୀ ପରିବର୍ତ୍ତିତ ହୋଇ ଆସିଲେ, ସେ ଦିଗରେ ଲୋକଙ୍କର ପ୍ରବୃତ୍ତି ଅଧିକ ହେବ । କୃଷି ଜୀବନରେ ଯେଉଁ ଦୁଃଖ ଅସୁବିଧା ସେ ସବୁ ଘୁଞ୍ଚାଇ ପାରିଲେ, ହଇରାଣ ହଟହଟା ଲାଘବ କରାଯାଇ ପାରିଲେ, କୃଷିପ୍ରତି ସମାଜର ମତିଗତି ଆପେ ଆପେ ବଦଳିଯିବ ।

କୃଷି-ଜୀବନର ସହଚର ଗ୍ରାମବାସ । କେବେ ପ୍ରାଚୀନ କାଳରେ ଆମ ଦେଶରେ ଗ୍ରାମଜୀବନ ଆଦର୍ଶ ଜୀବନ ଥିଲା । ଏବେ ଯାହା ଅବସ୍ଥା, ସେ କଥା କାହାରିକି ଅଗୋଚର ନାହିଁ । ରାସ୍ତା ନାହିଁ, ଘାଟ ନାହିଁ, ପିଇବା ପାଣି ତ ଦୂରର କଥା, କୌଣସି ପ୍ରକାର ପାଣି ମିଳିବା ମଧ୍ୟ ଅନେକ ସ୍ଥାନରେ କଷ୍ଟକର । ପୃଥିବୀର ସବୁଆଡ଼େ ସମସ୍ତେ ପବନ ବେଗରେ ଗତିକରି ଚାଲିଛନ୍ତି, ଆଉ ଆମେ ଯେପରି ସ୍ଥାଣୁ । ଗାଁ ଗହଳରେ ବସବାସର ସୁଖସ୍ବାଚ୍ଛନ୍ଦ୍ୟ ଲାଗି ସକଳ ବନ୍ଦୋବସ୍ତ କରାଯାଇ ପାରିଲେ, କୃଷି-ଜୀବନ ପ୍ରତି ବିତୃଷ୍ଣା ଅନେକ ପରିମାଣରେ କମିଯିବ । ପୁଣି କୃଷି-ଜୀବନରେ ଶିକ୍ଷା ସଙ୍ଗେ ସମ୍ପର୍କ ଅତି ଅଳ୍ପ । ବିଶ୍ବସଂସାର ସଙ୍ଗେ ଆଦାନ ପ୍ରଦାନ ପ୍ରାୟ ନାହିଁ । ତେଣୁ ଆପେ ଆପେ ମନକୁ ଆସେ ସଙ୍କୋଚ । ଶିକ୍ଷାର ବହୁଳ ପ୍ରସାର ହେଲେ ଏ ଭାବ ନିଶ୍ଚୟ ଅପସୃତ ହୋଇଯିବ । କୃଷି-ପ୍ରଣାଳୀରେ ପରିବର୍ତ୍ତନ ସଙ୍ଗେ, ଏ ସମସ୍ତ ପରିବର୍ତ୍ତନ କରାଗଲେ ସମାଜର ମତିଗତି ସ୍ବତଃ ବଦଳିଯିବ, ଆଉ ସମାଜରେ କୃଷକ ତା'ର ଉପଯୁକ୍ତ ସ୍ଥାନ ଦଖଲକରି ବସିବ ।

## ଅସଲ ହେଲା—ରୋଜଗାର

ଖାଦ୍ୟ ଆମର ଅଭାବ । ଆମର ଖାଦ୍ୟ ଆମର ଦେଶରେ ଉତ୍ପନ୍ନ କରିବାକୁ ହେବ । ସେଥିପାଇଁ କ୍ଷେତ ଆମର ଅଛି । ମାତ୍ର ଖାଲି ସେତିକି ହେଲେ ସମସ୍ତଙ୍କୁ ଯଥେଷ୍ଟ ଖାଦ୍ୟ ମିଳିପିବ ନାହିଁ । ସେ ଖାଦ୍ୟ ଉତ୍ପନ୍ନ ହୋଇ ମଧ୍ୟ ଆମ ଦେଶରେ ନ ରହିପାରେ । ଆୟ ଉପରେ ନିର୍ଭର କରେ ଖାଦ୍ୟ । ଆଜି ଯେ ଉପାଦେୟ ସୁଖାଦ୍ୟ ଖାଇବାକୁ ପାଉଛି, ସେ ନିଜେ କିଛି ସେ ସମସ୍ତ ଉତ୍ପନ୍ନ କରୁନାହିଁ । ରୋଜଗାର ନ କଲେ, ଆୟର ପନ୍ଥା ନ ଥିଲେ, ଆମର ଦେଶର ଖାଦ୍ୟ ଆମର ପାଇଁ ମଧ୍ୟ ମିଳି ପାରିବ ନାହିଁ ।

ଶତକଡ଼ା ୭୩ ଜଣ ଲୋକ ଆମ ଦେଶରେ କୃଷି ଉପରେ ନିର୍ଭର କରନ୍ତି । ଲୋକସଂଖ୍ୟା ବଢ଼ିବା ସଙ୍ଗେ ସଙ୍ଗେ କ୍ରମଶଃ ବେଶି ବେଶି ଲୋକଙ୍କର ଅବଲମ୍ବନ ହୋଇପଡ଼ୁଛି, ଏଇ କୃଷି । ଅନ୍ୟ ପନ୍ଥା ଅଛି ଅଉ କ'ଣ ? ବର୍ତ୍ତମାନ ରାଜତ୍ୱ ସମୟ ମଧ୍ୟରେ ଏ ଦେଶର ପୂର୍ବ ଶିଳ୍ପ-ବାଣିଜ୍ୟ ଲୋପ ପାଇଲା । ସିପାହୀ-ବିଦ୍ରୋହ ବେଳକୁ ଆଉ ପ୍ରାୟ କିଛି ନ ଥିଲା । ଏବେ ଅଧୁନିକ ଶିଳ୍ପ କଳ କାରଖାନା ଯାହା କିଛି ପ୍ରତିଷ୍ଠିତ ହୋଇଛି, ଭାରତବର୍ଷ ପରି ଦେଶ ତୁଳନାରେ ସେ ସବୁର ପରିମାଣ ଅତି ଅଳ୍ପ । ଭାରତବର୍ଷର ଶିଳ୍ପ ଶତକଡ଼ା ମାତ୍ର ୧୦ ଜଣକୁ କାମ ଯୋଗାଇ ପାରୁଛି ।

ବେଶି ପରିତାପର କଥା, ୧୮୯୧ ମସିହାରେ ଶତକଡ଼ା ୬୧ ଜଣଙ୍କର କୃଷି ଥିଲା ଅବଲମ୍ବନ । ୧୯୧୧ ବେଳକୁ ହେଲା ୭୧ । ୧୯୫୧ ମସିହାର ସେନ୍‌ସସ୍ ହିସାବରେ ଶତକଡ଼ା ୭୩ ଜଣ ଲୋକ କୃଷିଉପରେ ନିର୍ଭର କରନ୍ତି । ଏଥିରୁ ସ୍ପଷ୍ଟ ବୁଝାଯିବ ଯେ ଆମେ ଲୋକେ କାରୁପାଯ୍ୟ ଅସହାୟ ହୋଇ ଭୂମିଖଣ୍ଡକ ମାତ୍ର ଆଶ୍ରୟ କରି କୌଣସି ପ୍ରକାରେ ବଞ୍ଚି ରହୁଛନ୍ତି ।

ଏ ଅବସ୍ଥାର ଆଶୁ ପ୍ରତିକାର ଅବଶ୍ୟକ । ଖାଲି କୃଷିର ପ୍ରସାର ହେଲେ ଅଧିକ ଲୋକଙ୍କ ପାଇଁ କର୍ମ ମିଳିପାରିବ ନାହିଁ । ବର୍ତ୍ତମାନ ଅନେକ କୃଷକ ଅକର୍ମୀ ନ ହେଲେ ମଧ୍ୟ ଦରକର୍ମୀ । ଯେଉଁ କୃଷିକର୍ମ ଜଣେ କୃଷକ ପ୍ରତି ଯଥେଷ୍ଟ ନୁହେଁ, ତାକୁ ଆଦରି ବସିଛନ୍ତି ପାଞ୍ଚଜଣ । କୃଷିର ଯଥାର୍ଥ ଉନ୍ନତି କରିବାକୁ ହେଲେ, ଅନେକ କୃଷକଙ୍କୁ ଶିଳ୍ପ ବାଣିଜ୍ୟରେ ନିୟୋଜିତ କରିବାକୁ ହେବ । ଦେଶରେ ଯେତେ ଖାଦ୍ୟ ଉତ୍ପନ୍ନ ହେଲେ ମଧ୍ୟ ଯେ ବେକାର ତା'ର ଭାଗ୍ୟରେ ଅନଶନ । ନୂଆ ନୂଆ କର୍ମପନ୍ଥା ଲୋକଙ୍କ ଲାଗି ପ୍ରସ୍ତୁତ କରିବାକୁ ହେବ । ଖାଲି କୃଷି ସମ୍ଭଳକରି ସମସ୍ତଙ୍କୁ ଖାଦ୍ୟ ଯୋଗାଇବା ବିଡ଼ମ୍ବନା । ଶିଳ୍ପ ଆମର ତାହିଁ କେତେ ତଳେ ପଡ଼ି ରହିଛି । କୃଷି ଏବଂ ଶିଳ୍ପ ସମାନ ଭାବରେ କାନ୍ଧକୁ କାନ୍ଧ ପକାଇ ଗଢି ନ ଚଲେ ଖାଦ୍ୟ ସମସ୍ୟାର ସମାଧାନ ହେବ ନାହିଁ । ବଞ୍ଚି ରହିବା ପାଇଁ, ସୁଖ ସ୍ୱାଚ୍ଛନ୍ଦ୍ୟ ଉପଭୋଗ ପାଇଁ ଖାଦ୍ୟ ଯେପରି ଆବଶ୍ୟକ, ଅଗଣିତ ଅନ୍ୟାନ୍ୟ ପଦାର୍ଥ ମଧ୍ୟ ସେହିପରି ପ୍ରୟୋଜନ । ସେଥିପାଇଁ କମ୍ବେ ଯୋଜନାର ଲକ୍ଷ୍ୟ ହେଲା, ୧୫ ବର୍ଷ ଭିତରେ ଭାରତବର୍ଷର ଜଣପିଛା ଆୟ ଦୁଇଗୁଣ କରାଯାଇ ପାରିଲେ ଏ ଦାରିଦ୍ର୍ୟ ରାକ୍ଷସକୁ ଦମନ କରିବା ସମ୍ଭବ ହୋଇପାରେ । କୃଷିର ଉନ୍ନତି ସଙ୍ଗେ ସଙ୍ଗେ ଏ ଯୋଜନାରେ ବେଶି ଜୋର ଦିଆଯାଇଛି ଶିଳ୍ପ-ସଂଗଠନ ଉପରେ । ଶିଳ୍ପ ବାଣିଜ୍ୟ ବ୍ୟବସାୟଠାରୁ ପୃଥକ୍ ଭାବରେ ଖାଦ୍ୟ ସମସ୍ୟାର ଆଲୋଚନା ବାତୁଳତା । ତେଣୁ ଖାଦ୍ୟ ଉତ୍ପନ୍ନ କରିବା ସଙ୍ଗେ ସଙ୍ଗେ ଦେଶର ଅନ୍ୟାନ୍ୟ ଆୟ ବଢ଼ିବା ଦରକାର, ସମସ୍ତଙ୍କ

କାମ ଯୋଗାଇବା ଆବଶ୍ୟକ । ଏ ସବୁ ସଂଗଠନ ବ୍ୟକ୍ତିଗତ ଉଦ୍ୟମ ଉପରେ ଛାଡ଼ିଦେବାର ଦିନ ବହୁଦିନୁ ଗଲାଣି । ଖାଲି କଞ୍ଚାମାଲ ବିଦେଶକୁ ରପ୍ତାନି କରି କେତେ କାଳ ଏ ଦେଶ ମୁଣ୍ଡ ଟେକି ଠିଆ ହେବ ? ନିର୍ଦ୍ଦିଷ୍ଟ ଯୋଜନା ଅନୁଯାୟୀ ଶିଳ୍ପର ପ୍ରସାର କରିବାକୁ ହେବ । ଅର୍ଥନୈତିକ ସଂଗଠନ ଆବଶ୍ୟକ ଏବଂ ଏ କର୍ତ୍ତବ୍ୟ ସରକାରଙ୍କର । ସମସ୍ତଙ୍କପାଇଁ ଉପଯୁକ୍ତ କର୍ମର ବ୍ୟବସ୍ଥା ନ ହେଲେ ଖାଦ୍ୟ-ସମସ୍ୟାର ସମାଧାନ ହେବ ନାହିଁ ।

ଭାରତବର୍ଷରେ ଜଣପିଛା ହାରାହାରି ଆୟ ଯାହା, ଓଡ଼ିଶାର ଜଣପିଛା ଆୟ ତା'ଠାରୁ କମ । ପୂର୍ବ ଆଲୋଚନାରୁ ଏ କଥା ସୁସ୍ପଷ୍ଟ । ଶିଳ୍ପ-ବିଭବ ଆମର ନାହିଁ । ନିତ୍ୟ ବ୍ୟବହାର୍ଯ୍ୟ ଜିନିଷଠାରୁ ଆରମ୍ଭକରି ଆମୋଦ ଉପଭୋଗ ପଦାର୍ଥ ପର୍ଯ୍ୟନ୍ତ ଅଧିକାଂଶ ପାଇଁ ଆମେ ନିର୍ଭର କରୁ ପର ଉପରେ । ହିସାବ କରି ଦେଖାଯାଇଛି, ବାହାରରୁ ବାର୍ଷିକ ୪୦ କୋଟି ଟଙ୍କାର ଜିନିଷ ଓଡ଼ିଶାକୁ ଆସେ । ଏଥିରେ ସମସ୍ତଙ୍କର ସବୁ ଅଭାବ ଯେ ମେଣ୍ଟିଯାଏ, ତା' ନୁହେଁ । ମାତ୍ର ଆଉ କିଣିବାର ଶକ୍ତି ଯେ ନାହିଁ । ବିବିଧ ଶିଳ୍ପପାଇଁ ଓଡ଼ିଶାରେ ଅଛି ବହୁ ପ୍ରାକୃତିକ ସମ୍ପଦ; ଲୋକଙ୍କର ରୋଜଗାର ପାଇଁ ଅନେକ ପନ୍ଥା ଅଛି । କିନ୍ତୁ ଆମର ଅନେକ ଲୋକ ଅକର୍ମା ବସିଛନ୍ତି କିମ୍ବା ରେଙ୍ଗୁନ, କଲିକତା, କାଳମାଟିରେ ମାମୁଲି ଶ୍ରମିକ ହୋଇଛନ୍ତି । ଖାଲି କୃଷିର ପ୍ରସାର ଲାଗି ବ୍ୟବସ୍ଥା କଲେ ଖାଦ୍ୟର ଅଭାବ ମେଣ୍ଟିବ ନାହିଁ । ଏ ସବୁ ପ୍ରାକୃତିକ ସମ୍ପଦକୁ ଆୟତ୍ତ କରି ଲୋକଙ୍କୁ କାମ ଯୋଗାଇବା ଦରକାର ।

ଯୁଦ୍ଧକାଳମଧ୍ୟରେ କେତେ ରକମର ନୂଆ ନୂଆ କାମର ସୃଷ୍ଟି ହେଲା ; ଏଥିମଧ୍ୟରୁ ଶତକଡ଼ା ୮୦ ଭାଗରୁ ଅଧିକ ବଙ୍ଗଦେଶ, ଯୁକ୍ତପ୍ରଦେଶ, ବମ୍ବେ, ପଞ୍ଜାବ ଏବଂ ମାନ୍ଦ୍ରାଜର ଲୋକେ ଦଖଲ କରି ବସିଲେ । ଓଡ଼ିଶା ସବୁକ୍ଷେତ୍ରରେ ପଶ୍ଚାତ୍‌ପଦ । ପଛରେ ପଡ଼ି ପଡ଼ି, ଦମ୍ଭ ସାହସ ସବୁ ଯେପରି ସ୍ଥାନଚ୍ୟୁତ ହୋଇ ପଡ଼ିଲାଣି । ତେଣୁ ଯୁଦ୍ଧଫଳରେ ଓଡ଼ିଶା ଅନ୍ୟ ପ୍ରଦେଶ ତୁଳନାରେ

ଅପେକ୍ଷାକୃତ ଦରିଦ୍ର ହୋଇ ପଡ଼ିଛି । ବହୁକାଳ ଅବହେଳିତ ହୋଇ ଆଜି ଏ ପରିଣତି । ତେଣୁ ଏ ଶିଳ୍ପ-ସଂଗଠନରେ ଭାରତ ସରକାରଙ୍କର ଓଡ଼ିଶା ପ୍ରତି ବିଶେଷ ଦୃଷ୍ଟି ପଡ଼ିବା ଉଚିତ । ଓଡ଼ିଶାର ଏ ଦାବୀ ଯଥାର୍ଥ । କେବଳ କେତେଗୋଟି ମାତ୍ର ସ୍ଥାନରେ ଭାରତର ସମସ୍ତ ଶିଳ୍ପ କେନ୍ଦ୍ରୀଭୂତ ହୋଇ ଗଲେ ଦୁର୍ଦ୍ଦଶା ଘୁଞ୍ଚି ପାରିବ ନାହିଁ । ସବୁ ଅଞ୍ଚଳର ଲୋକଙ୍କ ପାଇଁ ଉପଯୁକ୍ତ କର୍ମର ବ୍ୟବସ୍ଥା ହେବା ପ୍ରୟୋଜନ । ପ୍ରାକୃତିକ ସୁବିଧା ଅନୁଯାୟୀ ବିଭିନ୍ନ ଶିଳ୍ପ ଅନୁଷ୍ଠାନ ଦେଶ ସାରା ଖୋଲାଯିବା ବାଞ୍ଛନୀୟ । ଶିଳ୍ପର ପ୍ରସାର ନ ହେଲେ, ବାଣିଜ୍ୟ ବ୍ୟବସାୟରେ ଭାଗିଦାର ହେବାପାଇଁ ଓଡ଼ିଶାରେ ଲୋକେ ସୁଯୋଗ ନ ପାଇଲେ, ଖାଦ୍ୟ ସମସ୍ୟାର ସମାଧାନ ହେବ ନାହିଁ—ଓଡ଼ିଆ ଜାତିର ମେରୁଦଣ୍ଡ ଭାଙ୍ଗି ପଡ଼ିବ । ମାତ୍ର ପରିସ୍ଥିତି ଅତି ଶିଥିଳ । ତେଣୁ ସରକାରୀ ଉଦ୍ୟମ ଏବଂ ସହାୟତା ହିଁ ଏ ଅଭିଶାପ ମୋଚନ କରି ଏକା ମନ୍ତ୍ରବାଦ ।

ସ ମା ପ୍ତ

---

Printer—L. Garabaru, Sri Radharaman Press,
Cuttack—1947